
ମଙ୍ଗଳ ଗ୍ରହରେ
ପ୍ରଥମ ମଣିଷ

# ରହସ୍ୟପୁରୀ

ମୋର ଦାଦା ଡକ୍ଟର୍ ଚନ୍ଦ୍ରଶେଖର ମହାପାତ୍ର ଭାରତରେ ଉଚ୍ଚଶିକ୍ଷା ସାର ଗୋଟାଏ କ'ଣ ଗବେଷଣା ପାଇଁ ରୁଷିଆ ଆସିଥିଲେ । ମାତ୍ର ସେ ତାଙ୍କ ଗବେଷଣାରେ ଏପରି ମାତି-ଗଲେ ଯେ ସେଠାରେ ସେ ରହିଗଲେ । ତାଙ୍କର ସୁପାରିଶ୍ ଯୋଗୁ ମୁଁ ମଧ୍ୟ ଉଚ୍ଚଶିକ୍ଷା ପାଇଁ ରୁଷିଆ ଆସିଲି ଓ ଲେନିନ୍‌ଗ୍ରାଡ୍ ବିଶ୍ୱବିଦ୍ୟାଳୟରେ ଯୋଗ ଦେଲି । ଦାଦା ଲେନିନ୍‌ଗ୍ରାଡ୍‌ଠାରୁ ପ୍ରାୟ ଶହେ ମାଇଲ ଦୂର ଗୋଟିଏ ସ୍ଥାନରେ ଥାଆନ୍ତି, ମାତ୍ର ତାଙ୍କୁ ଦେଖି ଯିବାପାଇଁ ସେ ମନ କରୁଥାନ୍ତି । ମୁଁ ରୁଷିଆରେ ଦୁଇ ବର୍ଷ କଟାଇ ସାରିଲି ପରେ ମଧ୍ୟ ଜାଣି ନ ଥାଏ ଦାଦା କେଉଁ ବିଷୟରେ ଗବେଷଣା କରୁଛନ୍ତି । ତାଙ୍କଠାରୁ ଏ ଦୁଇ ବର୍ଷ ଭିତରେ ମୁଁ ମାତ୍ର ଦୁଇ ଖଣ୍ଡ ଚିଠି ପାଇଥିଲି । ତାଙ୍କୁ ଦେଖି ଯିବାକୁ ଇଚ୍ଛା ହେଉଥିଲେ ମଧ୍ୟ ତାଙ୍କ ଅନୁମତି ନ ନେଇ ଯିବା ଠିକ୍ ନୁହେଁ ବିଚାରି ମୁଁ ଆଉ ଯିବାକୁ ଇଚ୍ଛା କରୁ ନ ଥିଲି । ମାତ୍ର ଦିନେ ହଠାତ୍ ତାଙ୍କଠାରୁ ଗୋଟିଏ ନିମନ୍ତ୍ରଣ ପାଇ ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଚନ୍ଦ୍ରଦାଦା ଲେଖିଥିଲେ, ଆଗାମୀ ଦୁଇ ତିନି ଦିନ ଭିତରେ ମୁଁ ତାଙ୍କ ପାଖକୁ ଯାଇପାରିବି କି ? ଯୋଗକୁ ତା ପରଦିନ ଏକ ମାସ ପାଇଁ ଆମ ବିଶ୍ୱବିଦ୍ୟାଳୟ ବନ୍ଦ ହେଉଥାଏ । ତେଣୁ ତା ପରଦିନ ମୁଁ ଦାଦାଙ୍କ ପାଖରେ ପହଂଚିବି ବୋଲି ଟେଲିଗ୍ରାମ୍‌ଟିଏ କରିଦେଇ ଅପେକ୍ଷା କରି ରହିଲି ।

ବିଶ୍ୱବିଦ୍ୟାଳୟ ବନ୍ଦ ହେବାମାତ୍ରେ ମୁଁ ଦାଦାଙ୍କ ପାଖକୁ ବାହାରିଲି । ସକାଳ ଗାଡ଼ିରେ ଆସିଲେ ସୁବିଧା ହେବ ବୋଲି ଦାଦା ଲେଖିଥିଲେ । ଏଣୁ ମୁଁ ସକାଳ ଗାଡ଼ି ଚଢ଼ିଲି । ମନେ ମନେ ଭାବୁଥାଏ, ଦାଦାଙ୍କୁ ତ ଅନେକ ଦିନ ହେଲା ଦେଖିନି, ଏବେ ସେ ଟିକିଏ ବୟସ୍କ ହୋଇ ଯାଇଥିବେ । ଦାଢ଼ି ଟିକିଏ ଟିକିଏ ପାଚି ଯାଇଥିବ । ଅଙ୍କ କଷି କଷି ସେ ଆଉଟିକେ ଚଣ୍ଡା ହୋଇ ଯାଇଥିବେ······। ମତେ କେମିତି କେମିତି ଲାଗିଲା । ବୈଜ୍ଞାନିକଙ୍କୁ ମୋର ଖୁବ୍ ଡର; ବିଶେଷତଃ ଦାଦାଙ୍କ ପରି ଜଣେ ଖିଆଲୀ ଗଣିତଜ୍ଞ······। ମୁଁ ଯେଉଁ ଡବାରେ ଚଢ଼ିଲି ମୋ ଭାଗ୍ୟକୁ ସେଥିରେ କେବଳ ଜଣେ ଭଦ୍ରବ୍ୟକ୍ତି ଥିଲେ । ଭାବିଲି ସମୟଟା ଅଯଥା କଟାଇବା ଅପେକ୍ଷା ତାଙ୍କ ସଙ୍ଗେ କିଛିଟା ଗପସପ କଲେ ଅନ୍ତତଃ ବିଶେଷ ଖରାପ ଲାଗିବନି । ତେଣୁ କଥାବାର୍ତ୍ତା ଆରମ୍ଭ କଲି—

—ଆଜ୍ଞା, ଆପଣ କେତେ ବାଟ ଯିବେ ?

—ଆପଣ ? ମୋ ପ୍ରଶ୍ନର ଉତ୍ତର ନ ଦେଇ ଭଦ୍ରବ୍ୟକ୍ତି ସିଧା ମୋ ପ୍ରଶ୍ନ ମୋତେ ପଚାରିଲେ । ମତେ ବିରକ୍ତ ଲାଗିଲା । ଭଦ୍ରବ୍ୟକ୍ତି କଣ ସାଧାରଣ ଶିଷ୍ଟାଚାର ଶିଖି ନାହାନ୍ତି ?

—ଲେନିନ୍‌ଗ୍ରାଡ୍ । ମୁଁ ସଂକ୍ଷେପରେ ଉତ୍ତର ଦେଲି । ଭଦ୍ରବ୍ୟକ୍ତି ଟିକିଏ ଗମ୍ଭୀର ହୋଇଉଠିଲେ ।

—ଅଚ୍ଛା, ଲେନିନ୍‌ଗ୍ରାଡ୍‌ରେ କ'ଣ ଆପଣଙ୍କର ଘର ?

—ନା, ମୁଁ ମୋ ଦାଦା ଡକ୍‌ଟର୍ ଚନ୍ଦ୍ରଶେଖର ମହାପାତ୍ରଙ୍କ ପାଖକୁ ଯାଉଛି । ହଠାତ୍ ଭଦ୍ରବ୍ୟକ୍ତି ଖୁବ୍ ଗମ୍ଭୀର ହୋଇଉଠିଲେ ।

—ଡକ୍ଟର୍ ଚନ୍ଦ୍ରଶେଖର ମହାପାତ୍ର କ'ଣ ଆପଣଙ୍କର ଦାଦା ? ଆଜ ଆପଣ କ'ଣ ତାଙ୍କ ରହସ୍ୟପୁରୀକୁ ଯାଉଛନ୍ତି ? ମୁଁ ଆଶ୍ଚର୍ଯ୍ୟ ହୋଇଗଲି । 'ରହସ୍ୟପୁରୀ' ପୁଣି କ'ଣ ?

—ରହସ୍ୟପୁରୀ ? ଆପଣ କାହା କଥା କହୁଛନ୍ତି ? ମୁଁ ପଚାରିଲି । ମାତ୍ର ଭଦ୍ରବ୍ୟକ୍ତି ଟିକିଏ ବିରକ୍ତ ହେବାପରି ଜଣାଗଲେ ।

—ହଁ ହଁ, ଡକ୍ଟର୍ ଚନ୍ଦ୍ରଶେଖର ମହାପାତ୍ରଙ୍କର 'ରହସ୍ୟପୁରୀ' କଥା ମୁଁ କହୁଛି ।

ଓଃ...ସେ ଜଣେ ବିଚିତ୍ର ଲୋକ । ଆପଣ କ'ଣ କିଛି ଜାଣନ୍ତି ନାହିଁ ?

ମୁଁ ସତରେ ଖୁବ୍ ଆଶ୍ଚର୍ଯ୍ୟ ହୋଇ ଯାଇଥିଲି । ଦାଦାଙ୍କ ସଙ୍ଗେ 'ରହସ୍ୟପୁରୀ' କଥାଟିର ଯେ କି ସମ୍ପର୍କ, ମୁଁ ବୁଝି ପାରିଲି ନାହିଁ । ତେଣୁ ଗୋଟିଏ ନିରୀହ ପିଲା ପରି କହିଲି—

—ନା' ତ । ମୁଁ ପ୍ରାୟ ସାତ ଆଠ ବର୍ଷ ପରେ ତାଙ୍କ ପାଖକୁ ଯାଉଛି । ଭଦ୍ରବ୍ୟକ୍ତି ବଡ଼ ଗମ୍ଭୀର ହୋଇ ମୋ ମୁହଁକୁ ଚାହିଁଲେ । କିଛି ସମୟ ପରେ ଟ୍ରେନ୍ ଝରକାବାଟେ ବାହାରକୁ ଚାହିଁ କହିଲେ—

—ନିକଟସ୍ଥ ରେଳ ଷ୍ଟେସନର ଦଶ ମାଇଲ ପୂର୍ବକୁ ତାଙ୍କର ରହସ୍ୟପୁରୀ । ଗୋଟାଏ ଖୁବ୍ ବଡ଼ ସ୍ଥାନକୁ ସେ ଅନେକ ଉଚ୍ଚ ତାରବାଡ଼, ପାଚେରୀ ଓ ପାଇନ୍ ଗଛଦ୍ୱାରା ଆବଦ୍ଧ କରି ରଖିଛନ୍ତି । ସେ ତ ଆଦୌ ବାହାରକୁ ବାହାରନ୍ତି ନାହିଁ । ତା ଭିତରେ

ରୀତିମତ୍ ଗୋଟାଏ କାରଖାନା ତିଆରି କରିଛନ୍ତି । ସେଠାରେ ସେ କ'ଣ କରନ୍ତି ତାହା ତାଙ୍କୁ ହିଁ ଜଣା । ଠିକ୍ ରାତି ଅଧରେ ଗୋଟାଏ ବିକଳ କାନ୍ଦଣା ଶବ୍ଦ ତା ଭିତରୁ ଶୁଭେ । ଓଃ ! କି ବିକୃତ ଶବ୍ଦ ! ଅଜଣା ମଣିଷ ଛାନିଆ ହୋଇଯିବ । ଆମ ଘର ସେହି ରହସ୍ୟପୁରୀ ପାଖରେ । ତା ଭିତରେ ମଣିଷ ତ ଦୂରର କଥା, ବିଲେଇଛୁଆ ତାଙ୍କ ଅନୁମତି ନ ନେଇ ଯାଇ ପାରିବ ନାହିଁ । ଏତିକି କହି ଭଦ୍ରବ୍ୟକ୍ତି ନୀରବ ହୋଇ ମୋ ପାଖରୁ ଉଠି ଚାଲିଗଲେ । ମୁଁ ଭାବିଲି, ବୋଧହୁଏ ମୋ ସହ ତାଙ୍କର ଆଉ କଥାବାର୍ତ୍ତା କରିବାକୁ ଇଚ୍ଛା ନାହିଁ । ସତକୁ ସତ ଦୁହେଁଯାକ ଲେନିନ୍‌ଗ୍ରାଡ୍‌ରେ ଓହ୍ଲାଇବା ପର୍ଯ୍ୟନ୍ତ ଆଉ କଥାବାର୍ତ୍ତା ହୋଇ ନ ଥିଲୁ ।

ଏ ଭଦ୍ରବ୍ୟକ୍ତି ଚନ୍ଦ୍ରଦାଦାଙ୍କ ବିଷୟରେ ଯେଉଁ ବିଚିତ୍ର କଥା କହିଲେ ତାହା ଶୁଣି ଆହୁରି ମୁଁ ବେଶି ଡରିଗଲି । ଚନ୍ଦ୍ରଦାଦା ଛଅ ଫୁଟର ଜଣେ ବିଶାଳ ଲୋକ । ବେଶ୍ ଗୋଛାଏ ଦାଢ଼ି ତାଙ୍କର ଚେହେରାକୁ ଆହୁରି ଗମ୍ଭୀର କରି ଦେଇଥାଏ । ଏବେ ହୁଏତ ଦାଢ଼ିତକ ପାଚି ଆସିବଣି । ସବୁବେଳେ ଥୋଡ଼ାଏ କାଗଜପତ୍ର ଧରି ଲେଖାଲେଖି କରୁଥାଆନ୍ତି । ସେ କେଉଁ ବିଷୟରେ ଗବେଷଣା କରୁଥିଲେ, ତାହା ମୁଁ ଆଦୌ ଜାଣି ନ ଥିଲି । ମାତ୍ର ସେଇଟା ଯେ ବେଶ୍ ଗୁପ୍ତ କଥା, ସେ କଥା ଅନୁମାନ କରିନେଲି । ରାତି ଅଧରେ ଗୋଟାଏ ତୀବ୍ର ବିକଳ କାନ୍ଦଣା ଶବ୍ଦ ! ଓଃ ! ସତରେ ଖୁବ୍ ଭୟଙ୍କର ଶୁଣା ଯାଉଥିବ । ମନେ ମନେ ଶିହରି ଉଠିଲି । 'ରହସ୍ୟପୁରୀ' ଆଉ ଭୂତକୋଠି ନୁହେଁ ତ ? ଏମିତି ଭାବୁ ଭାବୁ ଲେନିନ୍‌ଗ୍ରାଡ୍‌ରେ ଟ୍ରେନ୍ ପହଞ୍ଚିଲା । ଓହ୍ଲାଇ ଗଲି ।

ପ୍ଲାଟ୍‌ଫର୍ମରେ ଠିଆହୋଇ ଦାଦାଙ୍କ 'ରହସ୍ୟପୁରୀ'କୁ ଯିବାକୁ କିଛି ଗୋଟାଏ ଉପାୟ ଖୋଜିଲି । ଏତିକିବେଳେ ଜଣେ ଝିଅ ମୋ

ପାଖକୁ ଆସି ପଚ୍ଚାରିଲା, "ତୁମେ ବୋଧହୁଏ ଡକ୍ଟର୍ ଚନ୍ଦ୍ରଶେଖର ମହାପାତ୍ରଙ୍କର ପୁତୁରା ଶ୍ୟାମଳେନ୍ଦୁ ମହାପାତ୍ର ?" ମୁଁ ହଠାତ୍ ଆଶ୍ଚର୍ଯ୍ୟ ହୋଇଗଲି । ମୁଁ ତ ତାକୁ ଚିହ୍ନି ନାହିଁ । ଏ ଝିଅଟି ମତେ ଚିହ୍ନିଲା କିମିତି ? ମୁଁ କହିଲି, "ହଁ, କିନ୍ତୁ ତମେ ମତେ ଚିହ୍ନିଲ କିପରି ?" ଝିଅଟି ତା ବ୍ୟାଗ୍‌ରୁ ମୋର ଗୋଟାଏ ଫଟୋ କାଢ଼ି କହିଲା, "ଡକ୍ଟର୍ ମହାପାତ୍ର ଏଇଟା ମୋତେ ଦେଇଥିଲେ । ମୋ ନାଁ ରିନା । ମୁଁ ତାଂକର ବ୍ୟକ୍ତିଗତ ସହକାରିଣୀ । ଆସ, ମୁଁ ଆମ ଗବେଷଣା ପ୍ରତିଷ୍ଠାନର ଜିପ୍ ନେଇ ଆସିଛି । ତମକୁ ନେଇଯିବି ।" ଜିପ୍‌ରେ ବସିଲୁ । ଜିପ୍ ପ୍ରଧାନ ରାସ୍ତା ଛାଡ଼ି ଗୋଟାଏ ସରୁ ରାସ୍ତାରେ ଚାଲିଲା । କିଛି ସମୟ ପରେ ମୁଁ କହିଲି, "ରିନା, ତାହାହେଲେ ଆମେ 'ରହସ୍ୟପୁରୀ'କୁ ଯାଉଛୁ ?" ମୋ କଥା ଶୁଣି ରିନା ସିଧା ମୋ ମୁହଁକୁ ଚାହିଁ କହିଲା, "ତମେ ଯାତ୍ରା ଭିତରେ 'ରହସ୍ୟପୁରୀ'ର ପରିଚୟ ପାଇ ଗଲଣି ?" ଏପର୍ଯ୍ୟନ୍ତ ମୋ ମୁଣ୍ଡରେ 'ରହସ୍ୟପୁରୀ'ର ଭୂତ ବସା ବାନ୍ଧିଥାଏ । ଗୋଟାଏ ଆଶଂକା ମୋ ମନରୁ ଦୂର ହୋଇ ନ ଥାଏ । କହିଲି—ହଁ, ବାଟରେ ଜଣେ ଭଦ୍ରଲୋକ ମତେ ଏ ବିଷୟରେ ସାବଧାନ କରି ଦେଇଛନ୍ତି । ତେଣୁ ମୋର ସନ୍ଦେହ ଓ ଆଶଙ୍କା—ମୁଁ ଗୋଟାଏ ଭୂତକୋଠିକୁ ଯାଉନି ତ ? ମୋ କଥା ସେତିକିରେ ରହିଗଲା । ରିନା ଖୁବ୍ ଜୋରରେ ହସିଉଠିଲା । କହିଲା, "ନା ନା, ଶ୍ୟାମଳେନ୍ଦୁ, ତୁମର ଆଶଂକା ବିଲ୍‌କୁଲ୍ ମିଛ । ସେଇଟା ଗୋଟାଏ ବିଜ୍ଞାନ ସମ୍ବନ୍ଧୀୟ ଗବେଷଣା ପ୍ରତିଷ୍ଠାନ । ତୁମେ ସବୁ ଜାଣିବ ଯେ, ବ୍ୟସ୍ତ କାହିଁକି ?"

ଚୁପ୍ ହୋଇ ବସିଲି । ଜିପ୍ ଆଗେଇ ଯାଉଥାଏ । ଦୂରରୁ 'ରହସ୍ୟପୁରୀ'ର ରହସ୍ୟଘେରା ପାଚିରି ଓ ପାଇନ୍ ବନ ଦେଖାଗଲା । ପ୍ରଥମେ ପ୍ରାୟ ଦେଢ଼ପୁରୁଷ ଉଚ୍ଚ ତାରବାଡ଼ । ପରେ ରିନା ମୋତେ

କହିଲା—ବାଡ଼ରେ ସେଥିରେ ଇଲେକ୍‌ଟ୍ରିକ୍ ଶକ୍ତି ଛାଡ଼ି ଦିଆଯାଏ ନିରାପତ୍ତା ଦୃଷ୍ଟିରୁ । ତାପରେ ଜେଲ୍‌ର ପାଚେରି ପରି ମେଘନାଦ ପାଚେରି ଓ ଭିତରେ ଆକାଶଚୁମ୍ବୀ ପାଇନ୍ ଗଛର ବାଡ଼ । ଜିପ୍ ଫାଟକ ପାଖରେ ପହଂଚିଲା । ଦୁଇଜଣ ପ୍ରହରୀ 'ରହସ୍ୟପୁରୀ'ର ବିରାଟ ଫାଟକ ଖୋଲିଦେଲେ । ଜିପ୍ ଭିତରେ ପଶିଲା । ମୋ ମନ ଭିତରେ ଅଧରାତିର କାନ୍ଦଣା ଶବ୍ଦ ବେଶ୍ ତୀବ୍ର ହୋଇଉଠୁଥାଏ । ଜିପ୍ ଗୋଟାଏ ମୋଡ଼ ବୁଲିଲାବେଳକୁ ଗୋଟାଏ ବିଚିତ୍ର ଜିନିଷ ଉପରେ ମୋର ଆଖି ପଡ଼ିଲା । କେତୋଟି ଗଛ ଉହାଡ଼ରେ ଗୋଟାଏ ବିରାଟ ଅଣ୍ଡାକାର ନାଲି ପଦାର୍ଥ । ସେଇଟା ଅନେକ ବଡ଼—ପ୍ରାୟ ପଇଁତିରିଶି ଚାଳିଶି ଫୁଟ ଉଚ୍ଚ ହେବ । ସେତେବେଳକୁ ରାତି ସାତଟା । ବିଜୁଳି ଆଲୁଅ ଜଳୁଥାଏ । ଅନେକ ଲୋକ ସେଇଠି ଏପଟ ସେପଟ ହେଉଥାନ୍ତି । ରିନା ଆଡ଼େ ଚାହିଁଲି, ମାତ୍ର ସେ କିଛି ନ କହି ଜିପ୍ ଚଲେଇ ନେଲା ।

ଗୋଟାଏ ବିରାଟ କୋଠା ଆଗରେ ଜିପ୍ ରହିଲା । ରିନା ମୋତେ ଗୋଟିଏ ଛୋଟ ରୁମ୍‌କୁ ନେଇଗଲା । ମୁଁ ଜିନିଷପତ୍ର ରଖି ବାହାରିଲି ଦାଦାଙ୍କ ସହ ଦେଖା କରିବାକୁ । କିଛି ବାଟ ଗଲା ପରେ ଗୋଟିଏ କୋଠରି ଆଗରେ ପହଞ୍ଚି ରିନା କଲିଂ ବେଲ୍ ଚିପିଲା । କିଛି ସମୟ ପରେ ଭିତରୁ ଆଉ ଗୋଟିଏ ଘଣ୍ଟି ବାଜିଉଠିଲା । କବାଟ ଖୋଲି ଆମେ ଭିତରକୁ ପଶିଲୁ ।

ଦାଦାଙ୍କୁ ଦେଖି ନମସ୍କାର କଲି । ଗୋଟାଏ ବଡ଼ ଟେବୁଲ୍ ଉପରେ ଗୋଟାଏ କାଗଜ ବିଛା ହୋଇଛି । ଦାଦା ଆଉ ଦୁଇଜଣ ସେଇ କାଗଜଟା ଉପରେ ନଇଁପଡ଼ି ଖୁବ୍ ଗୁରୁତର ଆଲୋଚନା କରୁଥାନ୍ତି । ମତେ ଦେଖି ଦାଦା ଟିକିଏ ହସିଦେଲେ । ତାପରେ ପୁଣି

ତାଙ୍କ କାମରେ ମନ ଦେଲେ । ପରେ କଥା ହେବ ବୋଲି ଭାବି ବାହାରି ଆସିଲି । ମତେ ମୋ କୋଠରୀରେ ଛାଡ଼ି ରନା ଚାଲିଗଲା । ତାର ଗୁଡ଼ାଏ କାଗଜପତ୍ର ଟାଇପ୍ କରିବାକୁ ଥିଲା । ମୋ କୋଠରୀରୁ ଦୁଇଟା ଘର ଛାଡ଼ି ଖାଇବା ଘର । ରନା ମୋତେ କହିଗଲା ରାତି ଦଶଟାରେ ଖିଆପିଆ ହୁଏ । ମୁଁ ଟିକିଏ କ୍ଳାନ୍ତ ହୋଇ ପଡ଼ିଥିଲି । ପୋଷାକପତ୍ର କାଢ଼ି ଗଡ଼ପଡ଼ ହେବାର ଯୋଗାଡ଼ କଲି ।

## ରହସ୍ୟପୁରୀର ରହସ୍ୟ

କିଛି ସମୟ ପରେ ମୋର ନିଦ ଭାଙ୍ଗିଗଲା । ଘଣ୍ଟା ଦେଖିଲିବେଳକୁ ସାଢ଼େ ଦଶଟା ଟପିଗଲାଣି । ତରତର ହୋଇ ଚପଲହଳକ ଗଳେଇ ଖାଇବା ଘରକୁ ବାହାରିଗଲି । କେହି ନ ଥାନ୍ତି ସେଠାରେ । ବୋଧହୁଏ ସେଠାରେ ସମସ୍ତେ ଖାଇ ସାରିଲେଣି । କିଛି ସମୟ ବସିବା ପରେ ଗୋଟିଏ ବୁଢ଼ୀ ଖାଇବା ଜିନଷ ଧରି ଆସିଲା । ଭୋକ କରୁଥିଲା, ପେଟେ ଖାଇଦେଲି । ତଥାପି କେହି ନ ଥାନ୍ତି । ମୋ ପାଖରେ ସେଇ ବୁଢ଼ୀ ଖାଇବାକୁ ବସି ପଡ଼ିଲା । ଭାବିଲି ତାହା ସହିତ ଟିକେ ଗପସପ କଲେ ଭଲ ହୁଅନ୍ତା । ପଚାରିଲି—

—ମାଉସୀ, ତମ ନାଁ କଣ ?

—ମୋ ନାଁ ପଚାରୁଛ ପୁଅ ? ମୋ ନାଁ ନନା ପାଉ୍‌ଲୋଭ୍‌ନା

—ତମେ ଏଠି କେତେଦିନ ହେଲା ରହିଲଣି ?

—ମୁଁ ? ଏଠି ମୋର ପାଞ୍ଚ ବର୍ଷରୁ ଅଧିକ କଟିଲାଣି । ରୋଷେଇ କରି, ବାସନ ମାଜି ମୁଁ ବଡ଼ ହଇରାଣ ହେଲିଣି । କାମକୁ

ପାରୁନ । ଡକ୍ଟର୍ ମହାପାତ୍ରଙ୍କୁ କହିଲି, ଆଉ ଗୋଟାଏ ଦୁଇଟା ଲୋକ ରଖ । ସେ ତାଙ୍କ କାମରେ ବ୍ୟସ୍ତ । ମୋ କଥା ଶୁଣିବାକୁ ବେଳ କାହିଁ ? ହଁ, ତମ ନାଁ କ'ଣଟି ପୁଅ ? ତମେ ପରା ଚନ୍ଦ୍ର-ଶେଖରଙ୍କର ପୁତୁରା ହେବ ?

—ହଁ, ମତେ ତୁମେ ଶ୍ୟାମଳେନ୍ଦୁ ବୋଲି ଡାକିବ । ଏଠାକୁ ବୁଲିବାକୁ ଆସିଛି । ଆଚ୍ଛା ନନା ମାଉସୀ, ଅଧରାତିରେ ଗୋଟାଏ କି ଶବ୍ଦ ଶୁଭେ ଏଠି ?

—କୁହନା ପୁଅ, କୁହନା ସେ କଥା । ମୁଁ ଯେତେବେଳେ ପ୍ରଥମେ ଆସିଲି, ପ୍ରଥମେ ତ ଛନିଆ ହୋଇଗଲି, ପଳେଇବାକୁ ବସିଲି । ଏବେ ଅଭ୍ୟାସ ହୋଇଗଲାଣି । ସେଇଟା କି ଶବ୍ଦ କେଜାଣି, ମୁଁ ବୁଝିପାରୁନି । ତମକୁ ରନା ବୁଝାଇ ଦେବ ।

—ଆଚ୍ଛା, ସେ କ'ଣ ଖାଇସାରି ଗଲାଣି ?

—ନା, ସେ ଆସିନି । ଏଗାରଟା ପରେ ସେ ଖାଏ । ହଉ ତମେ ବସିଥାଅ, ମୁଁ ଟିକେ ଯାଉଛି; ଅନେକ କାମ ପଡ଼ିଛି ।

ନନା ଚାଲିଗଲା ପରେ ସେଇ ଖାଇବାଘରେ ପଡ଼ିଥିବା ଗୋଟିଏ ଆରାମ ଚଉକିରେ ବସି ରନାକୁ ଅପେକ୍ଷା କଲି । ବସି ବସି ବିରକ୍ତ ଲାଗିଲା । ଠିକ୍ ଉଠି ପଳାଇବାକୁ ବସିଛି, ହଠାତ୍ ଗୋଟିଏ ବିଚିତ୍ର ଶବ୍ଦରେ ଚମକି ପଡ଼ିଲି । ଗୋଟାଏ ପୁରୁଣା କବାଟ ଖୋଲିବା ସମୟରେ ଯେମିତି ଗୋଟିଏ କେଁ·····ଶବ୍ଦ ହୁଏ, ସେମିତି ଶୁଣାଗଲା ପ୍ରଥମେ । ମାତ୍ର ଶବ୍ଦଟା ଆସ୍ତେ ଆସ୍ତେ ବଢ଼ିବାକୁ ଲାଗିଲା । ଖୁବ୍ କରୁଣ ଅଥଚ ଖୁବ୍ ତୀବ୍ର । ମୋ ଛାତି ଥରିଉଠିଲା । ଏଇଟା ଯେ ସେଇ ରହସ୍ୟମୟ କାନ୍ଦଣା ଶବ୍ଦ, ମୁଁ ବୁଝି ପାରିଲି । ମନରେ

ଖୁବ୍ ଭୟ ହେଲା । ଘର ଭିତରେ ମୁଁ ଏକା ଓ କେତୋଟି ଇଲେକ୍‌ଟ୍ରିକ୍ ବଲ୍‌ବ । ଶବ୍ଦଟା ଅତି ତୀବ୍ର ହୋଇଉଠିଲା । ମୁଁ ଖୁବ୍ ବ୍ୟସ୍ତ ହୋଇଉଠିଲି । ଆଃ ! ରିନା ଏପର୍ଯ୍ୟନ୍ତ ଗଲା କୁଆଡ଼େ ? ବାହାରେ ଖୁବ୍ ଅଂଧାର । ଟ୍ରେନ୍‌ରେ ସେ ଭଦ୍ରଲୋକଙ୍କ କଥା ମନେପଡ଼ିଲା । ସତେ ତ ! ଜଣେ ଯେପରି ଖୁବ୍ କରୁଣଭାବେ କାନ୍ଦୁଛି । ଓଃ ! ଅସ୍ତବ୍ୟସ୍ତ ହୋଇ ଘର ଭିତରେ ବୁଲିବାକୁ ଲାଗିଲି । କବାଟ ଖୋଲିବାକୁ ସାହସ ହେଲାନି । ଶବ୍ଦଟା କ୍ରମଶଃ କମି ଆସିଲା । କିଛି ସମୟ ପରେ ଶବ୍ଦଟା ବିଲ୍‌କୁଲ୍ କମିଗଲା । ଟିକେ ଦମ୍ଭ ଆସିଲା । ମନେ ମନେ ରିନା ଉପରେ ଖୁବ୍ ବିରକ୍ତ ହୋଇ ପଡ଼ୁଥିଲି । ହଠାତ୍ ସେ ଶବ୍ଦଟା ପୁଣି ଶୁଣାଗଲା । ଭାବିଲି, ଏଇ ମୁହୂର୍ତ୍ତରେ ଦଉଡ଼ି ଯାଇ ମୋ ରୁମ୍‌ରେ କବାଟ ଝରକାସବୁ ବନ୍ଦ କରି ଶୋଇପଡ଼ିବି । ମାତ୍ର ଯିବାକୁ ସାହସ ଥିଲେ ତ ?

ଏତିକିବେଳେ ରିନା କବାଟ ଖୋଲି ତରତର ହୋଇ ପଶି ଆସିଲା । ଶବ୍ଦଟା ଆସ୍ତେ ଆସ୍ତେ ବଢ଼ୁଥାଏ । ସେ ମୋ ପାଖରେ ଆସି ବସି ପଡ଼ିଲା । ଖୁବ୍ ବିରକ୍ତ ଓ ଭୟରେ ମୁଁ ତାକୁ ଚାହିଁଲି । ମୁଁ ଯେ ଅନେକ ଡରି ଯାଇଛି ସେ କଥା ସେ ବୁଝି ପାରିଲା । ଟିକେ ହସି କହିଲା—ଶ୍ୟାମଳେନ୍ଦୁ ! ଏ ବିଚିତ୍ର ଶବ୍ଦରେ ତମେ ନିଶ୍ଚୟ ଡରି ଯାଇଥିବ । କିନ୍ତୁ ବିଚିତ୍ର ନୁହେଁ କି ୧ଟା ବି ଭୂତକୋଠି ନୁହେଁ । ଗୋଟାଏ ଆଣବିକ ମୋଟର ଇଂଜିନ୍‌ରୁ ଏହି ଶବ୍ଦଟି ବାହାରୁଛି । ବସ, ସବୁ ବୁଝେଇ ଦେଉଛି । ଆଉ ଥରେମାତ୍ର ଏ ଶବ୍ଦଟା ହେବ । ହେଇ, ପୁଣି ଆରମ୍ଭ ହେଲାଣି…… । ସେ ଶବ୍ଦଟା ପୁଣି ତୀବ୍ରତର ହୋଇଉଠିଲା । କିଛି ସମୟ ପରେ ସେଇଟା ପୁଣି ମିଳାଇ ଗଲା । ଘୁଆ ଭିତରେ ରିନା ବସି ଖାଉଥିଲା; ଖାଇସାରି

ଦୁଇଟା କପି ଆଣିଲା । ଘଣ୍ଟା ସାଢ଼େ ଏଗାରଟା ଟପିଲାଣି । କପି ପିଇ ପିଇ କହିଲା—

—ହଁ ଶ୍ୟାମଳେନ୍ଦୁ, ତୁମେ ପ୍ରଥମେ ଜାଣିରଖ, ତୁମ ଦାଦା ଡକ୍‌ଟର୍ ଚନ୍ଦ୍ରଶେଖର ମହାପାତ୍ର, ଆମର ଜ୍ୟୋତିର୍ବିଦ୍ ପ୍ରଫେସର୍ ପୋପ୍‌ଭର୍ ଆଉ ଇଞ୍ଜିନିୟର ସିତାଂଶୁ ମହାନ୍ତି ମିଶି ଗୋଟାଏ ଆଣବିକ ଇଂଜିନ୍ ତିଆରି କରିଛନ୍ତି । ସେଇ ଇଞ୍ଜିନ୍‌ର କାମ ଏପର୍ଯ୍ୟନ୍ତ ଶେଷ ହୋଇନି । ଏଣୁ ପ୍ରତିଦିନ ରାତି ଏଗାରଟା ପରେ ତାକୁ ପରୀକ୍ଷାମୂଳକଭାବେ ଚଲାଯାଏ । ସେଥିରୁ ଏ ଶବ୍ଦ ବାହାରେ । ତେବେ ସେଇଟା ଅବଶ୍ୟ ମୂଳ କଥା; ଆମର ସମଗ୍ର ଯୋଜନା ଗୋଟିଏ ଅତି ମୂଲ୍ୟବାନ୍ ଓ ପ୍ରଧାନ ଆବିଷ୍କାର ।

—ଏଁ, ସମଗ୍ର ଯୋଜନାଟା ତେବେ କଣ ? ମୋର ବିସ୍ମୟର ସୀମା ନାହିଁ ।

—ଶୁଣ, ବ୍ୟସ୍ତ ହୁଅନା । ମୁଁ ସବୁ ଗୋଟି ଗୋଟି କହୁଛି । ଆଚ୍ଛା ଶ୍ୟାମଳେନ୍ଦୁ, ତମେ ଆମର ଏ ସୂର୍ଯ୍ୟ ଓ ଗ୍ରହମାନଙ୍କ କଥା କିଛି ଜାଣିଥିବ ନିଶ୍ଚୟ ?

—ହଁ, ଜାଣିଛି ।

—ତେବେ ଶୁଣ । ଆମର ଏ ନିତିଦିନିଆ ସୂର୍ଯ୍ୟକୁ କେନ୍ଦ୍ର କରି ତ ଅନେକ ଗ୍ରହ ବୁଲୁଛନ୍ତି । ପ୍ରଥମେ ବୁଧ, ତାପରେ ଶୁକ୍ର ଓ ତାପରେ ଆମ ପୃଥିବୀ । ଏଇ ପୃଥିବୀଠାରୁ ପାଞ୍ଚ କୋଟି ମାଇଲ ଦୂରରେ ଆମ ସହିତ ସୂର୍ଯ୍ୟ ଚାରିପାଖରେ ବୁଲୁଛି ମଂଗଳ ଗ୍ରହ । ବେଳେ ବେଳେ ମଂଗଳ ପୃଥିବୀର ଖୁବ୍ ପାଖକୁ ଚାଲିଆସେ । ମାତ୍ର ଏମିତି ଖୁବ୍ କମ୍ ଘଟେ । ହଜାର ହଜାର ବର୍ଷ ପୂର୍ବେ ଥରେ ମଂଗଳ ଆମ ପୃଥିବୀର ଅନେକ ପାଖକୁ ଚାଲି ଆସିଥିଲା । ଏବେ ଏଇ

ମାସରେ କଛୁ ପାଖେଇ ଆସୁଛି । ଏଣୁ ଏଇ ସୁଯୋଗରେ ଟିକଏ ବୁଲି ଆସିବାକୁ ଭାବୁଛୁ ।

—ଏଁ···ବୁଲି ଆସିବ ? ମଂଗଳ ଗ୍ରହ କ'ଣ ତମ ହାତ ପାଖରେ ଅଛି ଯେ ମନେକଲମାତ୍ରେ ଡିଆଁଟାଏ ମାରଦେଇ ପହଞ୍ଚି ଯିବ ? ଆଉ ଡିଆଁଟାଏ ମାରଦେଇ ଫେରି ଆସିବ ? ତମ କଥା ତ ମୁଁ କଛୁ ବୁଝି ପାରୁନାହିଁ ରନା !

—ହଁ, ପାଖ ନୁହେଁ ତ ଆଉ କ'ଣ ? ଜମା ପାଞ୍ଚ କୋଟି ମାଇଲ୍ ତ ; ଆମ ଏହି ବିଶାଳ ବିଶ୍ୱ ତୁଳନାରେ କଛୁ ନୁହେଁ । ତା'ଛଡ଼ା ପୃଥିବୀରୁ ମଂଗଳ ଗ୍ରହକୁ ସିନା ଖାଲି ଖାଲି ଡିଆଁ ମାରି ହେବନାହିଁ; ଆମେ ଗୋଟିଏ ଯନ୍ତ୍ର ଯାନରେ ବସି ଡିଆଁ ମାରିବା । ସେଥିପାଇଁ ତ ଅନେକ ଟଂକା ଖର୍ଚ୍ଚ ହେଉଛି ଏଠି । ଆମର ଏଇ ଆଣବିକ ଇଂଜନ୍‌ଟା କ'ଣ ହେବ ବୋଲି ଭାବୁଛ ତମେ ?

—ଅର୍ଥାତ୍ ? ମୋର ଆଦୌ ବିଶ୍ୱାସ ହେଉ ନ ଥାଏ ।

—କଥାଟା ହେଲା ଗୋଟାଏ ମହାଶୂନ୍ୟରେ ଏହି ଆଣବିକ ଇଂଜନ୍‌ଟା ଖଂଜି ଆଉ ସପ୍ତାହ ଭିତରେ ଆମେ ମଂଗଳ ଗ୍ରହ ଅଭିମୁଖେ ଯାତ୍ରା କରିବୁ । ରେଳ ଷ୍ଟେସନରୁ ଆମେ ଏଠିକି ଆସିଲାବେଳକୁ ଯେଉଁ ନାଲି ଅଣ୍ଡାକାର ପଦାର୍ଥଟା ଆଜି ଦେଖିଲ, ସେଇଟା ମହାଶୂନ୍ୟ ଯାନ—ଭେଷ୍ଟକ୍ । ସେଇ ଯାନଟା ପ୍ରାୟ ତିଆରି ସରିଲାଣି । ଆଉ ସପ୍ତାହକ ଭିତରେ ଇଂଜନ୍‌ଟା ପୂରାପୂରି ଠିକ୍ ହୋଇଯିବ, ଆଉ ସେଥିରେ ଖଂଜା ଯିବ । ତାପରେ ଆମର ମହାଶୂନ୍ୟର ଦିଗ୍‌ବିଜୟ ଆରମ୍ଭ ହୋଇଯିବ । କ'ଣ ବୁଝୁଛ ଶ୍ୟାମଳେନ୍ଦୁ ?

ଶନା ହସିଉଠିଲା; ମାତ୍ର ମୋ ମନରୁ ସନ୍ଦେହ କମି ନ ଥାଏ । ପଚାରିଲି—

—ଆଚ୍ଛା ଶନା, ତମେ ତ କହିଲ ପୃଥିବୀଠାରୁ ମଙ୍ଗଳ ଗ୍ରହ ପ୍ରାୟ ପାଞ୍ଚ କୋଟି ମାଇଲ ଦୂର । ଏହି ସାମାନ୍ୟ ଯାନଟାରେ ବସି କେତେ ଦିନରେ ସେଠି ପହଂଚି ପାରିବ ?

—ହଁ, ତମେ ଠିକ୍ କଥାଟି କହିଛ । ଏଇ ସମସ୍ୟା ହିଁ ଆଜିର ପୃଥିବୀରେ ସବୁଠାରୁ ବଡ଼ ସମସ୍ୟା । ମାତ୍ର ଆମର ଡକ୍ଟର୍ ମହାପାତ୍ର ଆଉ ପ୍ରଫେସର୍ ପୋପ୍ଭିର୍ ଏ ଦିଗରେ ପ୍ରଥମ ସଫଳତା ଅର୍ଜନ କରିଛନ୍ତି । ସେମାନଙ୍କର ପରିକଳ୍ପନାରେ ସାହାଯ୍ୟ କରିଛନ୍ତି ଇଞ୍ଜିନିୟର ସିତାଂଶୁ ମହାନ୍ତି । ସେଥିପାଇଁ ସେମାନେ ଏକ ଅତି ଶକ୍ତିଶାଳୀ ଇଂଜିନ୍ ତିଆରି କରିଛନ୍ତି, ଯେଉଁ ଇଂଜିନ୍ ବଳରେ ଆମ ଯାନଟି ଘଣ୍ଟାକୁ ଦଶ ଲକ୍ଷ ମାଇଲ ବେଗରେ ଯାଇପାରିବ । ଫଳରେ ପୃଥିବୀରୁ ମଂଗଳ ଗ୍ରହକୁ ପହଂଚିବାକୁ ଖୁବ୍ ବେଶି ହେଲେ ପଚାଶ ଘଣ୍ଟା ଲାଗିବ । ଆମ ଇଂଜିନ୍ଟି ଆଣବିକ ଶକ୍ତିଦ୍ୱାରା ଚାଳିତ ହେବ । ଏଣୁ ବେଶି ଜାଳେଣି ଦରକାର ନାହିଁ । ଥରେ ଯାଇ ଫେରି ଆସିବାକୁ ଆମେ ଯଥେଷ୍ଟ ଜାଳେଣି ବୋହିନେଇ ପାରିବୁ । ଆଚ୍ଛା, ତମକୁ ଏଠି ଆଣବିକ ଶକ୍ତି ବିଷୟରେ କିଛି କହି ଦେଉଛି । ତୁମେ ଜାଣିଥିବ, ଦ୍ୱିତୀୟ ମହାଯୁଦ୍ଧରେ ଏହି ପରମାଣୁ ବୋମାର ଧମକ ହିଁ ଯୁଦ୍ଧଟାକୁ ବନ୍ଦ କରି ଦେଇଥିଲା । ଫୁଟ୍ବଲ୍ଠାରୁ ସାନ; ମାତ୍ର ଦୁଇଟା ବୋମା ଜାପାନର ଦୁଇଟା ପ୍ରଧାନ ସହରକୁ ପୂରା ଧୂଳିରେ ମିଶାଇ ଦେଇଥିଲା । ଆଜି ମଧ୍ୟ ଜାପାନବାସୀ ସେ କଥା ମନେ ପକାଉଥାନ୍ତି । ସେଇ ପ୍ରଚଣ୍ଡ ଶକ୍ତିକୁ ଯଦି ଆମେ ଏମିତି ଧ୍ୱଂସ କରିବାରେ ପ୍ରୟୋଗ ନ କରି କିଛି ଗୋଟାଏ ଭଲ କାମରେ

ଲଗାଇବା, ତେବେ ଆମେ ସେଥିରୁ କେତେ ଉପକାର ପାଇପାରିବା କହ ତ ? ଏଇ କଳ୍ପନାରୁ ଆମ ଆଣବିକ ଇଂଜିନ୍‌ର ଜନ୍ମ । ସେଇ ଅକଳନ ଶକ୍ତି ଆମ ଇଂଜିନ୍‌ଟାକୁ ଚଳାଇବ । ସାମାନ୍ୟ ଜାଳେଣିରେ ମଧ୍ୟ ଆମ ଇଂଜିନ୍‌ଟା ଅନେକ ଦିନ ପର୍ଯ୍ୟନ୍ତ ଅନବରତ ଚାଲିପାରିବ । ତା ଛଡ଼ା ପୃଥିବୀକୁ ଟପି ଗ୍ରହାନ୍ତରକୁ ଯିବାକୁ ହେଲେ ପ୍ରଥମ କଥା ହେଲା ଆମକୁ ପୃଥିବୀର ପ୍ରବଳ ମାଧ୍ୟାକର୍ଷଣ ଶକ୍ତି ଏଡ଼ାଇବାକୁ ପଡ଼ିବ । ସେଥିପାଇଁ ଦରକାର ପ୍ରଚଣ୍ଡ ଶକ୍ତି । ଆମେ କେବଳ ଆଣବିକ ଶକ୍ତିକୁ ବ୍ୟବହାର କଲେ କେବଳ ପୃଥିବୀକୁ ଟପିଯାଇ ପାରିବା । ଏଇସବୁ ବିଚାରରୁ ଆମେ ଅଣୁଶକ୍ତିକୁ ବ୍ୟବହାର କରି ଇଂଜିନ୍ ଚଳାଇବାକୁ ଠିକ୍ କରିଛୁ ।

—କିନ୍ତୁ ଶିନା, ମୋ ମନରେ ଆଉ ଗୋଟିଏ ପ୍ରଶ୍ନ ଉଠୁଛି, ତମେ ଯିନା ମଂଗଳ ଗ୍ରହରେ ପହଂଚି ପାରିବ, ମାତ୍ର ସେଠାକାର ଅବସ୍ଥା ନ ଜାଣି ରକେଟ୍‌ରୁ ଓହ୍ଲାଇବ କିପରି ବା ମଂଗଳ ଗ୍ରହରେ ବୁଲାବୁଲି କରିବ କିପରି ?

—କିନ୍ତୁ ସେ ବିପଦ କଟିଯାଇଛି । ପ୍ରଫେସର୍ ପୋପ୍‌ଭିର୍ ଜଣେ ବରିଷ୍ଠ ଜ୍ୟୋତିର୍ବିଦ୍ । ସେ ମଙ୍ଗଳ ଗ୍ରହକୁ ପର୍ଯ୍ୟବେକ୍ଷଣ କରି ଜାଣି ପାରିଛନ୍ତି, ମଙ୍ଗଳ ଗ୍ରହରେ ଅମ୍ଳଜାନ, ଅଙ୍ଗାରକାମ୍ଳ, ଯବକ୍ଷାର-ଜାନ ଆଦି ରହିଛି । ମଙ୍ଗଳ ଗ୍ରହରେ ଜଳର ମଧ୍ୟ ଅଭାବ ନାହିଁ ।

—ତାହାହେଲେ ତ ସେଠାରେ ମଣିଷ ଥିବେ ? ମୁଁ ଖୁବ୍ ଖୁସି ହୋଇ ପଚାରି ପକାଇଲି ।

—ହଁ, ମଣିଷ ଥିବାର ଅନେକ ସମ୍ଭାବନା ରହିଛି । କେବଳ ସେତିକି ନୁହେଁ, ମଙ୍ଗଳ ଗ୍ରହରେ ଆମେ ଗୋଟିଏ ନୂଆ ଧାତୁର ସନ୍ଧାନ ପାଇଛୁ । ଲୁହା ବା ସୀସା ସହିତ ଏ ଧାତୁକୁ କୌଣସି

ଏକ ନିର୍ଦ୍ଦିଷ୍ଟ ଅନୁପାତରେ ମିଶାଇଲେ ତାହା ସୁନା ପାଲଟିଯିବ । ଆମର ଆଲୋକ ବିଶେଷଜ୍ଞ ପ୍ରଫେସର୍ ପ୍ରୋଭ୍‌ଭର୍ ତା ନାଁ ଦେଇଛନ୍ତି ଭିଭ୍ରେନସ୍କ ।

—ଦାଦା ଯଦି ତାଂକ ମହାଶୂନ୍ୟ ଅଭିଯାନ ପଥରେ ଏତେଦୂର ଆଗେଇ ଗଲେଣି, ତେବେ ସେ ତାକୁ ଏତେ ଗୁପ୍ତ ରଖିଛନ୍ତି କାହିଁକି ? ମୁଁ ପଚାରିଲି ।

—ନା ତ, ତାଙ୍କ ଅଭିଯାନ କଥା ଗୁପ୍ତ ନାହିଁ । ଗୁପ୍ତ ଅଛି ସେଇ ଇଂଜିନ୍‌ଟାର ପ୍ରକୃତ ତଥ୍ୟ । କାରଣ ଅନେକ ଗବେଷକ, ଅନେକ ବୈଜ୍ଞାନିକ ତ ମହାଶୂନ୍ୟ ଅଭିଯାନ ପାଇଁ ଉଦ୍ୟମ ଚଳେଇଛନ୍ତି । କିନ୍ତୁ ସେମାନେ କେହି ଏମିତି ଗୋଟାଏ ଆଣବିକ ଇଞ୍ଜିନ୍ ଉଦ୍‌ଭାବନ କରିପାରି ନାହାନ୍ତି ବୋଲି ଏପର୍ଯ୍ୟନ୍ତ କେହି ଗ୍ରହାନ୍ତର ଯାଇପାରି ନାହାନ୍ତି । ଆମେ ଏ ଦିଗରେ ପ୍ରଥମ ହେବୁ ବୋଲି ଭାବୁଛୁ ।

—ଆଚ୍ଛା ଶ୍ୟାମଳେନ୍ଦୁ, ଆମେ ଯଦି ପ୍ରଥମ ମଣିଷ ଭାବରେ ମଙ୍ଗଳ ଗ୍ରହ ବୁଲି ଆସିବୁ, ତେବେ ଆମେ କେତେ ଗୌରବର ଅଧିକାରୀ ହେବୁ, ଭାବ ତ ? ଏଇ ଗୌରବ ହିଁ ପ୍ରତ୍ୟେକ ବୈଜ୍ଞାନିକ, ଆବିଷ୍କାରକଙ୍କୁ ଅତି ଦୁଃସାଧ୍ୟ କାମରେ ହାତ ଦେବାକୁ ଉତ୍ସାହ ଓ ଆନନ୍ଦ ଦେଇଥାଏ । ହଁ, ତେବେ ଆମେ ଏତେ ବେଶି ସାବଧାନ ଓ ତତ୍ପର ହେବାର ଆଉ ଗୋଟାଏ କାରଣ ଅଛି । ଆମେ ଖବର ପାଇଛୁ, ଆମେରିକାର ଆଉ ଜଣେ ବୈଜ୍ଞାନିକ ଜନ୍ ଗ୍ଲେନ୍ ଏ ଦିଗରେ ଅନେକ ଆଗେଇ ଗଲେଣି । ମଙ୍ଗଳ ଗ୍ରହରେ ପ୍ରଥମେ ପହଞ୍ଚିବାକୁ ସେ ଖୁବ୍ ଜୋର୍‌ସୋର୍‌ରେ ଉଦ୍ୟମ ଚଳାଇଛନ୍ତି ।

—ସେ କ'ଣ ଆଣବିକ ଇଞ୍ଜିନ୍ ତିଆରି କରି ପାରିଛନ୍ତି ?

—ଠିକ୍ ସେଇ ପ୍ରଶ୍ନ ତ ଆମ ସମସ୍ତଙ୍କ ଆଗରେ ଗୋଟିଏ ବଡ଼ ସମସ୍ୟା ସୃଷ୍ଟି କରିଛି । ଆମେ ଠିକ୍ ଜାଣୁନା, ସେ ଆଣବିକ ଇଞ୍ଜିନ୍ ତିଆରି କରି ପାରିଛନ୍ତି କି ନାହିଁ । ଆମର କାହିଁକି ସନ୍ଦେହ ହେଉଛି, ଆମ ଇଞ୍ଜିନ୍‌ଟାର ନକ୍‌ସା ଏବଂ ଗୁପ୍ତ ତଥ୍ୟ ହରଣଚାଲି କରି ନେବାର ସେ ଉଦ୍ୟମ କରୁଛନ୍ତି । ଏଣୁ ଆମକୁ ଖୁବ୍ ବେଶୀ ସତର୍କ ରହିବାକୁ ପଡ଼ୁଛି ।

ହଁ, ତୁମକୁ ଆଉ ଜଣେ ଇଞ୍ଜିନିୟରଙ୍କ କଥା କହିନି । ତାଙ୍କ ନାଁ ଓଜେନ ସୋଭ୍ । ସେ ବେଶ୍ ବୁଦ୍ଧିମାନ୍ ଓ ବିଶ୍ୱାସୀ ଲୋକ, ଡକ୍‌ଟର୍ ମହାପାତ୍ର ତାଙ୍କୁ ଖୁବ୍ ପ୍ରଶଂସା କରନ୍ତି । ତୁମେ ଆସ୍ତେ ଆସ୍ତେ ସମସ୍ତଙ୍କୁ ଚିହ୍ନିଯିବ ଯେ । କାଲି ତୁମକୁ ଆମର ଏ ଗବେଷଣାଗାର ଓ କାର୍ଯ୍ୟାଳୟ ବୁଲାଇ ଦେଖାଇ ଦେବ ।

ସେତେବେଳକୁ ରାତି ବାରଟାରୁ ଅଧିକ । ପରସ୍ପରଠାରୁ ବିଦାୟ ନେଇ ଆମେ ଶୋଇବାକୁ ଗଲୁ ।

## ମୋ ମୁଣ୍ଡରେ କାମ ପଡ଼ିଲା

ବେଶ୍ ଆନନ୍ଦରେ ମୋ ଦିନଗୁଡ଼ାକ କଟିଯାଉଥାଏ । ପ୍ରାୟ ଗୋଟାଏ ସପ୍ତାହ ଭିତରେ ସମସ୍ତଙ୍କ ସାଙ୍ଗରେ ମୋର ବେଶ୍ ପରିଚୟ ହୋଇଗଲା । ଚାରିଆଡ଼େ ବୁଲିବୁଲି କରି ସବୁ ଯନ୍ତ୍ରପାତି ଦେଖିନେଲି । ଯେଉଁଠାରେ ସେ ଆଣବିକ ମୋଟରଟା ତିଆରି ଚାଲିଥିଲା ସେଠାରେ ଠିଆହୋଇ ଦେଖିବାକୁ ମୋତେ ଖୁବ୍ ଭଲ ଲାଗୁଥାଏ । ଭେଷ୍ଟକଟାକୁ ଚଳାଇବାକୁ ଛଅଟା ଜେଟ୍ ଇଞ୍ଜିନ

ଲାଗିଛି । ସେ ଇଞ୍ଜିନ୍‌କୁ ଶକ୍ତି ଦେବ ଏଇ ଆଣବିକ ମୋଟରଟି । ତା' ଛଡ଼ା ମହାକାଶଯାନରେ ଅନେକ ଯନ୍ତ୍ରପାତି ଖଞ୍ଜା ଯାଇଛି । ଷ୍ଟେସନ୍‌ ଭିତରଟା ଶୀତତାପ ନିୟନ୍ତ୍ରିତ ହୋଇଥାଏ । ସଂପୂର୍ଣ୍ଣ ଭାବରେ ଷ୍ଟେସନ୍‌ ବିଦ୍ୟୁତ୍‌ ବଳଦ୍ୱାରା ଉଦ୍‌ଭାସିତ । ସେଥିପାଇଁ ଇଞ୍ଜିନ୍‌ରେ ଅନେକ ବିଦ୍ୟୁତ୍‌ ବ୍ୟାଟେରୀ ଖଞ୍ଜା ଯାଇଥାଏ । ଏଗୁଡ଼ାକ ସବୁ ଅନୁଧ୍ୟାନ କରିବାକୁ ମତେ ବେଶ୍‌ ଭଲ ଲାଗୁଥାଏ । ମୁଁ ଯୁଆ ଭିତରେ ଅନେକ ଯନ୍ତ୍ରପାତି କଥା ଜାଣିଗଲି । ଆମ ରହିବା ଘର ପଛପଟେ ଗୋଟାଏ ଖୁବ୍‌ ଲମ୍ବା ଓ ଉଚ୍ଚ ବିରାଟ ହଲ୍‌ଟାଏ ଥିଲା । ସେଇଟା ଗବେଷଣାଗାରର କାରଖାନା । ସବୁ ଆବଶ୍ୟକ ଯନ୍ତ୍ରପାତି ସେଠାରେ ତିଆରି ହୁଏ । ଦାଦା ଓ ଅନ୍ୟମାନଙ୍କ ଯତ୍ନରେ ଗୋଟାଏ ଖୁବ୍‌ ମଜବୁତ୍‌ ସିମେଣ୍ଟ କଂକ୍ରିଟ୍‌ ଟେବୁଲ ଉପରେ ମୋଟରଟା ରଖାଯାଇଥାଏ । ସେଇ ମୋଟରଟାକୁ ସଂପୂର୍ଣ୍ଣ ନିର୍ଦ୍ଦୋଷ କରିବାକୁ ଇଞ୍ଜିନିୟରମାନେ ଅନବରତ କାମ କରୁଥାନ୍ତି । କାରଣ ମହାଶୂନ୍ୟ ଅଭିଯାନରେ ସେଇଟା ଏକମାତ୍ର ସହାୟ ।

ରହସ୍ୟପୁରୀରେ ପହଞ୍ଚିବା ପ୍ରାୟ ସାତ ଆଠ ଦିନ ହୋଇଗଲାଣି । ଏମିତି ବୁଲୁ ବୁଲୁ ଦିନେ ଷ୍ଟେସନ ପାଖରେ ଦାଦାଙ୍କୁ ଦେଖିଲି । ସେ ମହାଶୂନ୍ୟଯାନ ପାଖରେ ଠିଆହୋଇ ତାକୁ ପର୍ଯ୍ୟବେକ୍ଷଣ କରୁଥାନ୍ତି । ହଠାତ୍‌ ଦାଦାଙ୍କୁ ଏକୁଟିଆ ପାଇ ପଚାରିଲି—

—ଦାଦା, କାମ କ'ଣ ଆଉରି ବାକି ଅଛି ?

ଦାଦା ମତେ ଟିକେ ଚାହିଁ କହିଲେ—

—ହଁ, ଅନେକ କାମ ବାକି ଅଛି । ଆସନ୍ତା ଦଶ ଦିନ ଭିତରେ ଆମକୁ ପୃଥିବୀ ଛାଡ଼ିବାକୁ ହେବ । ସେଥିପାଇଁ ହେଷ୍ଟିକ୍‌ରେ ଇଞ୍ଜିନ୍‌ଟା ଖଞ୍ଜିବାକୁ ଆମ ହାତରେ ମାତ୍ର ଆଉ ସାତ ଦିନ ରହିଲା ।

—ମୋଟରଟା କ'ଣ ଆହୁରି ସଂପୂର୍ଣ୍ଣ ହୋଇନି ?

—ଆଉ ଦୁଇ ଦିନ ଭିତରେ ତାକୁ ଠିକ୍ କରିଦେବାକୁ ବସିଛି । ତେବେ ସେଥିପାଇଁ ମୁଁ ବିବ୍ରତ ନୁହେଁ । ଆଉ ଗୋଟିଏ ଘଟଣା ମୋତେ ବରାବର ବିବ୍ରତ କରୁଛି ।

ମୁଁ ଆଶ୍ଚର୍ଯ୍ୟ ହେଲି । ଆଉ ଏମିତି କି ଘଟଣା ଥାଇପାରେ ଯେ ଦାଦା ସେ କଥା ଭାବି ଭାବି ବିବ୍ରତ ! ପଚାରିଲି—

—ଘଟଣାଟା କ'ଣ କହିବାକୁ ବୋଧହୁଏ ତୁମର ଆପତ୍ତି ନ ଥିବ ?

ଦାଦା ମତେ କିଛି ନ କହି ମହାଶୂନ୍ୟ ଯାନ ଚାରିପାଖରେ ବୁଲି ତାକୁ ଦେଖିବାକୁ ଲାଗିଲେ । ବିରାଟ ଅଣ୍ଡାକାର ଯାନଟିଏ । ତା'ର ବାହାରପଟେ ଏକ ପ୍ରକାର ତାପନିରୋଧ ନାଲି ରଙ୍ଗ ବୋଳା ହୋଇଥାଏ । ଦାଦା କିଛି ସମୟ ବୁଲି ବୁଲି ମୋ ପାଖକୁ ପୁଣି ଫେରି ଆସିଲେ । କୌଣସି ଗୋଟାଏ କଥାକୁ ସତେ ଯେମିତି ଖୁବ୍ ମନଦେଇ ଚିନ୍ତା କରୁଥାନ୍ତି । ମୁଁ ପୁଣି ପଚାରିଲି—

—ଦାଦା, ମୋ ପ୍ରଶ୍ନର ତ ଉତ୍ତର ଦେଲନି ?

—ହଁ, ମୁଁ ଭାବୁଛି ବୋଧହୁଏ ଆମ ଭିତରେ ଜନ୍ ଗ୍ଲେନ୍‌ର କେହି ଗୁପ୍ତଚର କାମ କରୁଛି ।

ମୁଁ ଚମକି ପଡ଼ିଲି । ଆମ ଭିତରେ ଆମେରିକାର ଗୁପ୍ତଚର ! ପଚାରିଲି । ଦାଦା କହିଲେ—

—ହଁ, ପ୍ରାୟ ଚାରି ପାଞ୍ଚ ଦିନ ତଳେ ଦିନେ ସକାଳୁ ମୋ ରୁମ୍‌ରେ ପଶିଯାଇ ଦେଖିଲି, ମୋ ଟେବୁଲ୍ ଉପରେ ଥିବା କାଗଜ-ପତ୍ରଗୁଡ଼ାକ କିଏ ଖୋଲାଖୋଲି କରିଛି । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ନିହାତି ମୂଲ୍ୟବାନ୍ କାଗଜଗୁଡ଼ିକ ମୁଁ ଲୁହା ଆଲମାରିରେ ଚାବିଦେଇ ରଖେ । ଲୁହା ଆଲମାରି ଖୋଲି ଦେଖିଲି, ସେସବୁ କିଛି ଗୋଳମାଳ ହୋଇନି । ମୋ ଅନୁପସ୍ଥିତିରେ କେବଳ ରନା ମୋ ରୁମ୍‌କୁ ଯାଏ । ସେଦିନ ରନା ଯାଇନି । ମୁଁ ଚାବି ନେଇ ଶୋଇବାକୁ ଗଲା ପରେ ଆଉ ଫେରିଆସି ରୁମ୍ ଖୋଲିନି । ତେବେ ଖୋଲିଲା କିଏ ? ମୋ ମନରେ ଖୁବ୍ ସନ୍ଦେହ ହେଲା । ମାତ୍ର କିଛି ଭାବି ପାରିଲି ନାହିଁ । କାହାକୁ ସନ୍ଦେହ କରି ନ ପାରି ବାଧ୍ୟ ହୋଇ ଚୁପ୍ ହୋଇ ରହିଲି । ମାତ୍ର ଏବେ ବି ମୁଁ ଏ ବିଷୟରେ ଠିକ୍ କରିପାରୁନି । ଯଦି ପ୍ରକୃତରେ ଆମ ଭିତରେ କିଏ ଗୁପ୍ତଚର ଥାଏ, ତାହାହେଲେ···ଆମର ଏତେ ପରିଶ୍ରମ ପଣ୍ଡ ହେବ ।

—ଆଚ୍ଛା ଦାଦା, ତୁମେ କ'ଣ କାହାକୁ ସନ୍ଦେହ କରିପାରୁନ ?

—ନା, କୌଣସି ନିର୍ଦ୍ଦିଷ୍ଟ ଲୋକକୁ ସନ୍ଦେହ କରିବାର ତ କାରଣ ଦେଖୁନି । ଆମ କାରଖାନାର କର୍ମଚାରୀମାନେ ବେଶ୍ ସାଧୁ ଓ ଦକ୍ଷ ଲୋକ । ଏ କାମ ତାଙ୍କ ଭିତରୁ କିଏ କରିଥିବ ବୋଲି ମୋର ସନ୍ଦେହ ହେଉନାହିଁ । ତା'ଛଡ଼ା ଏମାନେ ଆମର କାଗଜପତ୍ର କ'ଣ ବୁଝିବେ ଯେ ଚୋରି କରିବାକୁ ଆସିବେ ?

—ତେବେ ତ ଇଏ ଗୋଟିଏ ଭୟଂକର ବିପଦ । ତମେ ଏ କଥା ଅନୁସନ୍ଧାନ ନ କରିବା ଅର୍ଥ କେତେବେଳେ ଯେ କ'ଣ ଘଟିଯିବ, ତାହାର କିଛି ଠିକଣା ଅଛି ?

—ହଁ, ସେକଥା ମୁଁ ଭାବୁଛି । ମାତ୍ର ମୋର ତ ଆଦୌ ବେଳ ନାହିଁ । ଏକଥା ବୁଝିବାକୁ ରିନା ବା ପୋପ୍‌ଭିର୍ ବା ଡେନସୋଭ୍‌କୁ ଅବା କହନ୍ତୁ । କିନ୍ତୁ ପୋପ୍‌ଭିର୍ ତ ଭିରନସ୍କ ଉପରେ ଗବେଷଣା ଚଳାଇଛନ୍ତି । ଡେନସୋଭ୍ ଓ ସିତାଂଶୁ ମୋଟରହ୍ଟା କଥା ବୁଝୁଛନ୍ତି । ରିନା ବି ଅନ୍ୟ କାମରେ ବ୍ୟସ୍ତ । ଆଉ କାହା ଉପରେ ତ ବିଶ୍ୱାସ କରିହେଉନି ।

—ଆଚ୍ଛା ଦାଦା, ମୋ ଉପରେ ତୁମର ବିଶ୍ୱାସ ହେଉନି ?

—ଦାଦାଙ୍କ ମୁହଁ ଉଜ୍ଜ୍ୱଳ ହୋଇଉଠିଲା । ଆନନ୍ଦରେ କହିଲେ—

—ତୁ ପାରିବୁ ଶ୍ୟାମଳେନ୍ଦୁ ? ତୁ କ'ଣ ସମସ୍ତଙ୍କୁ ଚିହ୍ନି ସାରିଲୁଣି ?

—ହଁ, ବେଶ୍ ପାରିବି । ସମସ୍ତଙ୍କ ସଙ୍ଗେ ମୋର ପରିଚୟ ହୋଇଗଲାଣି । ତା'ଛଡ଼ା ଏ କାମରେ ମୋର ଟିକିଏ ଅଭିଜ୍ଞତା ମଧ୍ୟ ଅଛି । ହଷ୍ଟେଲରେ କାହାର କିଛି ଚୋରି ହେଲେ ଚୋର ଧରେ ମୁଁ ।

—ବାଃ, ତୁ ତ ଗୋଟାଏ ଗୁଇନ୍ଦା ପୁଲିସ୍ ଦେଖୁଛି—ଦାଦା ମୋ ପିଠିରେ ହାତ ମାରି କହିଲେ । ହଉ, ଯେତେବେଳେ କିଛି ସନ୍ଦେହ ହେବ, ରିନା ସଙ୍ଗରେ ଆଲୋଚନା କରିବୁ । ଦରକାର ହେଲେ ମୋତେ କହିବୁ ।

ଏତିକି କହି ଦାଦା ତାଙ୍କ ଗବେଷଣାଗାରକୁ ଚାଲିଗଲେ । ଏଇ କେତେଦିନ ସେ ଖୁବ୍ ବ୍ୟସ୍ତ ଥାଆନ୍ତି । ପୃଥିବୀ ଛାଡ଼ିବାର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ସ୍ଥିର କରିବା ଭାର ତାଂକ ଉପରେ । ମୋ ମୁଣ୍ଡରେ କାମ ପଡ଼ିଲା । ମୁଁ ବି ବେଶ୍ ଖୁସି ହେଲି । ଖାଲି ବସି ବସି ସମୟ କାଟୁଥିଲି । ଏବେ ଅନ୍ତତଃ ଚାରିଆଡ଼େ ଅବାଧରେ ବୁଲି ପାରିବି ।

## ମନ୍ତ୍ରଣା

ଏମିତି କିଛିଦିନ କଟିଗଲା । ପୃଥିବୀ ଛାଡ଼ିବାକୁ ଆଉ ଚାରୋଟି ଦିନ ମାତ୍ର ବାକି ଥାଏ । ଭେଷ୍ଟୁକ୍‌ରେ ଆଣିବାକୁ ମୋଟରଟା ବି ଖଂଜା ସରିଲାଣି । ସେତିକି ସଂପୂର୍ଣ୍ଣ କରି ପ୍ରସ୍ତୁତ ହେବାକୁ ଆଉ ଚାରି ଦିନ ସମୟ ଥାଏ । ଭେଷ୍ଟୁକ୍‌ରେ ଦିନରାତି କାମ ଚାଲିଛି । ସେଦିନ ମୁଁ ଓ ଦାଦା ଖୁବ୍ ସକାଳୁ ଯାନ ପାଖରେ ଠିଆହୋଇ କଥାବାର୍ତ୍ତା କରୁଛୁ, ହଠାତ୍ ଦେଖିଲୁ ପ୍ରଫେସର୍ ପୋପ୍‌ଭିର୍ ଶୂନ୍ୟଯାନର ସିଡ଼ିରେ ଖୁବ୍ ତରତର ହୋଇ ଓହ୍ଲାଇ ଆସୁଛନ୍ତି । ମୋ ମନରେ ଆଶଂକା ହେଲା—କ'ଣ ଘଟିଲା କି ଆଉ ! ମାତ୍ର ପ୍ରଫେସର୍ ପୋପ୍‌ଭିର୍ ଅଧାଯାଏ ଆସି ସେଇଠୁ ପାଟି କଲେ—

—ଚନ୍ଦ୍ରଶେଖର, ଚନ୍ଦ୍ରଶେଖର, ଶୀଘ୍ର ଆସ । ଖୁବ୍ ବିପଦ ।

ଦାଦା ଆଉ କିଛି ନ କହି ଦଉଡ଼ି ଚାଲିଗଲେ । ଖୁବ୍ ଆତଙ୍କ ଓ ଆଶଂକାରେ ମୁଁ ବି ତାଂକ ପଛେ ପଛେ ଦଉଡ଼ି ଗଲି । ପୋପ୍‌ଭିର୍ କହୁଥାନ୍ତି—

—ଆଜି ଖୁବ୍ ସକାଳୁ ମୁଁ ଓ ଡେନିସୋଭ୍ ଭେଷ୍ଟୁକ୍‌ର ବିଭିନ୍ନ ଯନ୍ତ୍ରପାତି ପରୀକ୍ଷା କରିବାକୁ ଚାଲିଆସିଲୁ । ଠିକ୍ ଇଂଜିନ୍ ପାଖରେ ପହଂଚି ଦେଖିଲି ତାର ଯନ୍ତ୍ରପାତିସବୁ ଗୋଳମାଳ

ହୋଇଛି । ଓଃ ! କି ବିପଦ !! ଆମେ ଯଦି ଦେଖି ନ ଥାନ୍ତୁ ନା କ'ଣ ଯେ ହୋଇଥାନ୍ତା କଳ୍ପନା କରି ହେଉନି । ଡେନସୋଭ୍ ସେଇଠି ଅଛନ୍ତି । ହଁ ଶ୍ୟାମଳେନ୍ଦୁ ! ତୁମେ ଯାଅ ତ, ସିତାଂଶୁକୁ ଡାକି ଆଣିବ ।

ମୁଁ ଏକରକମ ପ୍ରାଣ ବିକଳରେ ଦୌଡ଼ିଲି । ମୁଁ ଓ ସିତାଂଶୁ ୱେଷ୍ଟଲ୍ୟାବ୍‌ରେ ପହଞ୍ଚି ଦେଖିଲୁ ଦାଦା ଓ ପୋପ୍‌ଭିଚ୍ ଇଞ୍ଜିନ୍ ପାଖରେ ନଇଁପଡ଼ି କ'ଣ ପରୀକ୍ଷା କରିବାରେ ବ୍ୟସ୍ତ । ଡେନସୋଭ୍ ତାଙ୍କ ପାଖରେ ଠିଆହୋଇ ଚୁହିଁ ରହିଥାନ୍ତି । ଡେନସୋଭ୍‌ଙ୍କ ଆଚରଣ କାହିଁକି ମୋତେ ଭଲ ଲାଗିଲାନି । ଏ ବିପଦରେ ସେ ନିର୍ବିକାର ଭାବରେ ଠିଆ ହୋଇଛନ୍ତି । ସତେ ଯେପରି କିଛି ହୋଇନି ! ସିତାଂଶୁ ଇଂଜିନ୍ ପାଖକୁ ଚାଲିଗଲେ । କିଛି ସମୟ ପରେ ସେ ଚିତ୍କାର କରିଉଠିଲେ—

—ପ୍ରଫେସର୍, ଡକ୍ଟର୍ ଚନ୍ଦ୍ରଶେଖର, ଏ କାମ କଲା କିଏ ? ଓଃ ! କି ସାଂଘାତିକ ! ଆମେ ପୃଥିବୀ ଛାଡ଼ି ସାମାନ୍ୟ କିଛି ବାଟ ଯାଉ ନ ଯାଉଣୁ ଆଣବିକ ମୋଟରରେ ଯାନ୍ତ୍ରିକ ଗୋଳମାଳ ହୋଇଥାନ୍ତା ଓ ମହାଶୂନ୍ୟରେ ସମସ୍ତ ଯାନଟିର ଘଟିଥାନ୍ତା ବିସ୍ଫୋରଣ ! ମହାଶୂନ୍ୟରେ ମିଳେଇ ଯିବାକୁ ଆମକୁ ମିନିଟିଏ ବି ଲାଗି ନ ଥାନ୍ତା ! ସିତାଂଶୁ ଖୁବ୍ ଉତ୍ତେଜନାରେ କହିବାକୁ ଲାଗିଲେ—

—ଏଥର କ'ଣ ଆଉ କିଛି ସନ୍ଦେହ ଅଛି ଯେ ଆମ ଭିତରେହିଁ ଆମର ଜଣେ ଭୟଙ୍କର ଶତ୍ରୁ ରହିଛି ? ଡକ୍ଟର୍ ଚନ୍ଦ୍ରଶେଖର ମହାପାତ୍ରଙ୍କ ଗବେଷଣାଗାରରୁ ସେଦିନ ଚୋରି

ହେବାର ଉଦ୍ୟମ ହେଉଥିଲା । ଆଜି ଜାଣିଶୁଣି ଧ୍ୱଂସ କରି- ଦେବାର ଏ ଗୋଟାଏ ଷଡ଼ଯନ୍ତ୍ର । ନା, ନା ଡକ୍‌ଟର୍, ପୃଥିବୀ ଛାଡ଼ିବା ପୂର୍ବରୁ ସେ ଭୟଙ୍କର ଲୋକଟାକୁ ଧରିବାକୁ ପଡ଼ିବ । ନଚେତ୍ ଆମର ଜୀବନ ଆଦୌ ନିରାପଦ ନୁହେଁ ।

ଆମେ ସିତାଂଶୁଙ୍କ କଥା ଶୁଣି ଏକଦମ୍ ମୂକ ହୋଇ ଯାଇଥିଲୁ । ଭୟରେ ମୋ ପାଟିରୁ କଥା ବାହାରିଲା ନାହିଁ । ଡେନସୋଭ୍ କଥାବାର୍ତ୍ତାରେ ଟିକେ ଟିକେ ଯୋଗ ଦେଉଥାନ୍ତି । ସେ ବି ଆତଙ୍କିତ ହେବାପରି ଦେଖା ଯାଉଥାନ୍ତି । କିଛି ସମୟ ପରେ ଦାଦା କହିଲେ—

—ଆମ ଭାଗ୍ୟ ଭଲ; ଆଗରୁ ଏ କଥା ଜଣା ପଡ଼ିଲା । ତେବେ ଗୋଳମାଳ କଥା କିଏ ଦେଖିଲା ପ୍ରଥମେ ?

—ଡେନସୋଭ୍ ଟିକେ ଇତସ୍ତତଃ ହୋଇ କହି ପକାଇଲେ—

—ମୁଁ ଆଉ ପୋପ୍‌ଭିର୍ ତ ଏଠିକି ଏକାଠି ଆସିଥିଲୁ, ଦୁହେଁଯାକ ଦେଖିଲୁ । ପୋପ୍‌ଭିର୍‌ଙ୍କୁ ଗୁହାଳିଲି । ସେ ଟିକିଏ ବିରକ୍ତ ହୋଇଗଲେ ବୋଧହୁଏ । ହୁଏତ ସେ ଡେନସୋଭ୍‌ଙ୍କଠାରୁ ଏପରି ଉତ୍ତର ଆଶା କରୁ ନ ଥିଲେ । ସେ ଯାହାହେଉ, ଦାଦା ଆଲୋଚନା ଶେଷ କରିବାକୁ କହିଲେ ।

—ଆଚ୍ଛା, ଡେନସୋଭ୍ ଆଉ ସିତାଂଶୁ ତୁମେ ଦୁ'ଜଣ ଯାନଟିକୁ ଭଲ କରି ଦେଖି ନିଅ । ଆଜି ରାତିରେ ଏ ବିଷୟରେ ଆଲୋଚନା କରିବା ।

ଦାଦା ଓ ପ୍ରଫେସର୍ ଚାଲିଗଲେ । ଡେନସୋଭ୍ ଓ ସିତାଂଶୁ ଷ୍ଟେସ୍କ୍ ଉପରେ ଚଢ଼ିଲେ । ମୁଁ ଫେରିଲି ।

ମନଟା ମୋର ଖୁବ୍ ଖରାପ ଲାଗୁଥାଏ । ମଣିଷ ମଣିଷ ଭିତରେ ଶତ୍ରୁତା କାହିଁକି, ମୁଁ ବୁଝି ପାରିଲି ନାହିଁ । ଆମର ଭିତରେ ରହି କିଏ ଏମିତି ବିଶ୍ୱାସଘାତକତା କରୁଛି, ତାହା କେମିତି ଜାଣି ହେବ ? ଅଜଣା ଦେଶର ଏହି ଦୁଃସାହସୀ କେତୋଟିଙ୍କ ଭାଗ୍ୟରେ ଯେ କ'ଣ ଅଛି, ତାହା ପରମେଶ୍ୱରଙ୍କୁ ହିଁ ଜଣା । ଭଗବାନଙ୍କ ଉଦ୍ଦେଶ୍ୟରେ ପ୍ରଣାମ କଲି । ମଣିଷ ବିଜ୍ଞାନରେ ଯେତେ ବଳଶାଳୀ ହେଲେ ମଧ୍ୟ ସମସ୍ତ ଶକ୍ତିର ଶେଷ ସେଇ ଭଗବାନ ।

ସେଦିନ ଖାଇବାଘରେ ସଂଧ୍ୟାବେଳେ ମୁଁ, ସିତାଂଶୁ ଆଉ ରିନା ଏକାଠି ହେଲୁ ଜଳଖିଆ ଖାଇବାକୁ । ଖାଇସାରି ଟିକିଏ ଖୁସି ଗପ କରୁ କରୁ ମୋର ହଠାତ୍ ଗୋଟିଏ କଥା ମନେ ପଡ଼ିଗଲା । ମୁଁ ଚୁପ୍ ହୋଇଗଲି । ମୋର ଏମିତି ନୀରବତା ଦେଖି ରିନା ଆଉ ସିତାଂଶୁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଲେ । ସିତାଂଶୁ କହିଲେ—ମୋର ବୋଧହୁଏ ଘର କଥା ମନେ ପଡୁଛି; ମାତ୍ର ମୁଁ ତ ଅନ୍ୟ କଥା ଚିନ୍ତା କରୁଥିଲି । କହିଲି—

—ସିତାଂଶୁ, ମୋର ଘର କଥା ମନେ ପଡ଼ୁନି । ମୁଁ ଭାବୁଛି ସକାଳ କଥା । ଏ ଭୁଲ କେମିତି ହେଲା ? ମୁଁ ଭାବୁଛି ପ୍ରଫେସର୍ ପୋପ୍ଭିର୍ ସେ ଭୁଲଟିକୁ ଧରି ପାରିଥିଲେ । ମାତ୍ର ଦାଦା ପଚ୍ଛରିବାରୁ ଜେନସୋଭ୍ ଟିକିଏ ହଡ଼ବଡ଼େଇ ଯାଇ ନିଜ ନାଁଟିକୁ ଯୋଡ଼ି ଦେଇଥିଲେ ।

—କିନ୍ତୁ ସେମାନେ ଦୁହେଁଯାକ ବି ଧରି ପାରିଥାନ୍ତେ— ରିନା କହିଲା । କିନ୍ତୁ ଏ କଥାରେ ମୋର କି ମନ ମାନେ ? ମୁଁ କହିଲି—

—ନା, ଏ କଥା ମାନିବାକୁ ମୁଁ ପ୍ରସ୍ତୁତ ନୁହେଁ । ମୁଁ ନିଶ୍ଚିତ ଭାବରେ କହିପାରେ ଯେ ଡେନିସୋଭ୍ ଏ ଆବିଷ୍କାର କରିନାହାନ୍ତି । କାରଣ ଡେନିସୋଭ୍ ଏକଥା କହିଲାବେଳେ ମୁଁ ପ୍ରଫେସରଙ୍କୁ ଲକ୍ଷ୍ୟ କରିପାରିଛି । ସେ ଡେନିସୋଭ୍‌ଙ୍କଠାରୁ ଏପରି ଉତ୍ତର ଆଶା କରୁ ନ ଥିଲେ ।

—କିନ୍ତୁ ପୋପ୍‌ଭିଚ୍ ଜଣେ ଜ୍ୟୋତିର୍ବିଦ୍—ରିନା କହିଲା ।

—କିନ୍ତୁ ମୁଁ ତ ଦାଦାଙ୍କଠାରୁ ଶୁଣିଛି ଯନ୍ତ୍ରବିଦ୍ୟାରେ ବି ତାଙ୍କର ବିଶେଷ ଦକ୍ଷତା ଅଛି ।

—ଆଃ ! ମତେ ଟିକିଏ ଭାବିବାକୁ ଦିଅ । ସିତାଂଶୁ ଆମର ଏକତରଫା ଆଲୋଚନାରେ ବୋଧହୁଏ ଅସ୍ଥିର ହୋଇଉଠିଲେ ।

ରିନା ବୋଧହୁଏ ମୋ କଥାରେ ଅନେକ ସତ୍ୟତା ଥିବା ବୁଝି ପାରିଥିଲା । ସେ କହିଲା—

—ହଁ, ତା ବି ହୋଇପାରେ । ଅସମ୍ଭବ କ'ଣ ?

—ତୁମର ମନେଥିବ ତ ସିତାଂଶୁ, ଦାଦାଙ୍କ ଗବେଷଣାଗାରରୁ ଚୋରି ହେବାର ଉଦ୍ୟମ ହୋଇଥିଲା ?

—ସିତାଂଶୁ ଗୋଟିଏ ଗହିରିଆ ହୁଁ କଲେ । ସେ ବୋଧହୁଏ ମୋ କଥା ଚିନ୍ତା କରୁଥିଲେ । ମୁଁ ପୁଣି କହିଲି—

—ଏ ସମ୍ପର୍କରେ ମୋର ଗୋଟିଏ କଥା କହିବାକୁ ଅଛି । ଏ ଦୁଇ ଦିନ ତଳେ ଥରେ ରାତିରେ ମୋତେ ନିଦ ଲାଗିଲାନି । ସେଥିପାଇଁ ଲାଇବ୍ରେରୀରେ ଯାଇ ପଢୁଥିଲି । ଫେରିଲାବେଳକୁ ରାତି ଗୋଟାଏ ହୋଇଗଲା । ଡେନିସୋଭ୍‌ଙ୍କ ରୁମ୍ ଆଗରେ

ସ୍କୁଲ ଆସିଲାବେଳକୁ ଡେନସୋଭ୍ ରୁମ୍‌ରୁ ବାହାରି ଆସୁ ଆସୁ ମୋତେ ଦେଖି ହଠାତ୍ ଭିତରେ ପଶି କବାଟ ବନ୍ଦ କରି-ଦେଲେ । ମୋର ସନ୍ଦେହ ହେଲା । ଏତେ ରାତିରେ ଡେନସୋଭ୍ କୁଆଡ଼େ ବାହାରିଥିଲେ ? ପୁଣି ଦେହରେ ପୂରା କଳା ପୋଷାକ ! ମୁଁ ଗୋଟିଏ ଗଛ ଉହାଡ଼ରେ ଅଧଘଣ୍ଟାଏ ପର୍ଯ୍ୟନ୍ତ ଅପେକ୍ଷା କଲି । ମାତ୍ର ଡେନସୋଭ୍ ଆଉ ବାହାରିଲେ ନାହିଁ । ଭାବୁଛି, ସେଦିନ ରାତିରେ ସେ ବାହାରିଥିଲେ ଯାନ୍ତ୍ରିକ ଗୋଳମାଳ କରିବାକୁ, ମାତ୍ର ସୁବିଧା ହେଲାନି । କାଲି ରାତିରେ ଠିକଏ ମେଘୁଆ ପାଗ ତ ହୋଇଥିଲା, ଝିପିଝିପି ବର୍ଷା ବି ହେଉଥିଲା; ସୁବିଧା ଦେଖି କାମ ହାସଲ କରି ନେଇଛନ୍ତି । ସିତାଂଶୁ ମୋ କଥା ଖୁବ୍ ମନଦେଇ ଶୁଣୁଥିଲେ ।

—ତେବେ ଆମକୁ ଆଗରୁ ଏ କଥା କହିଲ ନାହିଁ କାହିଁକି ?

—ମୁଁ ଆଉ କେବେ ସମୟ ବା ସୁଯୋଗ ପାଇଲି କେତେବେଳେ ଯେ କାହାକୁ ଏକୁଟିଆ ପାଇଲେ କହିବି ? ଏଇ ଗତ ଦୁଇ ଦିନ ହେଲା ତ ତୁମ୍ଭେମାନେ ଖୁବ୍ କାର୍ଯ୍ୟବ୍ୟସ୍ତ ଥିଲ । ଆଜି ସକାଳେ କୌଣସି ପ୍ରକାରେ ଏ କଥା ଜଣାଇ ଦେଇଥାନ୍ତି; ମାତ୍ର ତା' ପୂର୍ବରୁ ଡେନସୋଭ୍ ତାଙ୍କ କାମ କରିଦେଲେ । ସକାଳୁ ତ ଏ ବିପ୍ଳବ ଲାଗିଲା ।

—ତେବେ କ'ଣ କରାଯାଇପାରେ ? ରିନା ପଚାରିଲା । ମୁଁ କହିଲି—

—ହଁ, ମୋ କଥାର ସମର୍ଥନ ଆପଣମାନେ କରନ୍ତୁ ବା ନ କରନ୍ତୁ ଡେନସୋଭ୍ ଯଦି ବା ଏ ଗୋଳମାଳ ପାଇଁ ଦାୟୀ ନୁହନ୍ତି, ତେବେ ତୁମେ କ'ଣ ଭାବୁନାହଁ ଯେ, ଯିଏ ଗତ ରାତିରେ

ଏ କାମ କରିଦେଇଥିଲା, ସେ ପୁଣି ତା ଅଭିଳାଷ ପୂରଣ କରିବାକୁ ଚେଷ୍ଟା କରିପାରେ ? ଆଜି ତୁମେ ସବୁ ପରୀକ୍ଷା କରି ଆସିଲା ପରେ ଭେଷ୍ଟିକେଲ୍‌ର ସମଗ୍ର ଯାନ୍ତ୍ରିକ ବ୍ୟବସ୍ଥା ଆଉଥରେ ପରୀକ୍ଷା କରିବାର ଆବଶ୍ୟକତା ଅନୁଭବ କରିପାରନ୍ତ ବା ତୁମକୁ ଏଥିପାଇଁ ଆଉ ସମୟ ହୋଇ ନ ପାରେ । ଏ ସୁଯୋଗରେ ଯଦି ଆଉଥରେ ସେହି ଲୋକ ପୁଣି କିଛି ଗୋଳମାଳ କରିଦିଏ, ତେବେ ତାର ଫଳାଫଳ କମିତି ଭୟଙ୍କର ହେବ, ଅନୁମାନ କରିପାରୁଛନ୍ତ ତ ?

—ସିତାଂଶୁ ଖୁବ୍ ବ୍ୟାକୁଳ ହୋଇପଡ଼ିଲେ । ସେ କହିଲେ—

—ଆଚ୍ଛା, ସେଥିପାଇଁ ଡେନସୋଭ୍ ଯଦି ଦାୟୀ ହୁଅନ୍ତ, ତେବେ ସେଦିନ ଡକ୍ଟର ମହାପାତ୍ରଙ୍କର ଗବେଷଣାଗାରରେ ସେ ପଶିଲେ କମିତି ? ଚାବି ତ ଗୋଟାଏ ଡକ୍ଟରଙ୍କ ପାଖରେ, ଆଉ ଗୋଟାଏ ରିନା ପାଖରେ । ଏତିକବେଳେ ରିନା କହିଲା—

—ହଁ, ସେଥିପାଇଁ ତ ଡେନସୋଭ୍ ଆଗରୁ ବାଟ ସଫା କରି ଦେଇଥିଲେ ।

—କମିତି ? ମୁଁ ଓ ସିତାଂଶୁ ଆଶ୍ଚର୍ଯ୍ୟ ହୋଇ ପଚାରିଲୁ ।

—ପ୍ରାୟ ପନ୍ଦର ଦିନ ତଳେ ଡେନସୋଭ୍ ତାଙ୍କ ରୁମ୍ ଚାବିଟା ହଜିଗଲା ବୋଲି ମୋଠାରୁ ଚାବି ମାଳଟା ନେଇଥିଲେ, କିନ୍ତୁ ସେଇଟା ଫେରାଇବାବେଳକୁ ଦାଦାଙ୍କ ଚାବିଟା ସେଥିରେ ଥିଲା କି ନାହିଁ ତୁମେ ଜାଣିଥିବ ।

—ହଁ, ସେଥିରେ ସେ ଚାବିଗୁଡ଼ାକ ଅବିକଳ ସେମିତି ଥିଲା ।

—ତେବେ ଡେନସୋଭ୍ ଆଉ ଚନ୍ଦ୍ରଶେଖରଙ୍କ ରୁମ୍‌ରେ ପଶିଲେ କମିତି ? ସିତାଂଶୁ ପଚାରିଲେ । ରିନା କହିଲା—

—ଆଃ ! ତୁମେ ବୁଝି ପାରୁନାହଁ ନା ସିତାଂଶୁ ? ମୋ ଗ୍ରହ ମାଳଟା ନେଇ ସେଇ ଗ୍ରହଟିର ନକ୍‌ସା ରଖିଥିବେ, ବା ଯଦି ଗବେଷଣାଗାରର ଗ୍ରହ ଚଢ଼ିପାରି ନ ଥିବେ ତେବେ ସବୁଗୁଡ଼ାକ ଗ୍ରହର ନକ୍‌ସା ଆଙ୍କି ରଖିଥିବେ । ଆଉ ସେଇ ନକ୍‌ସା ଅନୁସାରେ ଗ୍ରହ ତିଆରି କରିବାକୁ କିଛି କଷ୍ଟ ପଡ଼ି ନ ଥିବ ।

—କିନ୍ତୁ ସେ ଜାଲ୍ ଗ୍ରହ ଡେଜନସୋଭ୍ କେଉଁଠାରେ କରିଥିବେ ? ଏଠି ତ ନୁହେଁ ? ମୁଁ ପଚାରିଲି । ରିନା କହିଲି—

—ଆଚ୍ଛା ଶ୍ୟାମଳେନ୍ଦୁ, ତୁମେ ଆସିବା ଠିକ୍ ପରଦିନ ଡେଜନସୋଭ୍ କୌଣସି କାମରେ ସହରକୁ ଯାଇଥିଲେ । ତୁମର ମନେଅଛି ?

—ହଁ, ଅଛି ।

—ବେଶ୍, ଆଉ ଅସୁବିଧା କ'ଣ ? ମୋଠାରୁ ଗ୍ରହ ନେଇ ତାର ନକ୍‌ସା ଆଙ୍କି ସେଇଦିନ ସହରରେ ଗ୍ରହ କରି ଆଣିଲେ, ଆଉ ସୁବିଧା ଦେଖି ଗବେଷଣାଗାରରୁ ମୋଟରର ସମସ୍ତ ସୂତ୍ର ଓ ଅନ୍ୟାନ୍ୟ କାଗଜପତ୍ର ଚୋରି କରିବାକୁ ଚେଷ୍ଟା କରୁଥିଲେ । କିନ୍ତୁ ଭାଗ୍ୟ ଭଲ, ଡକ୍ଟର୍ ମହାପାତ୍ର ସେସବୁ କାଗଜପତ୍ର ତାଙ୍କର ଲୁହା ଆଲମାରିରେ ରଖିଥିଲେ ।

ରିନା ଏକଥା କହିବା ପରେ ଆମେ ସମସ୍ତେ ଚୁପ୍ ହୋଇଗଲୁ । ଆଉ କହିବାର ତ ସମୟ ନ ଥିଲା । ଏଣିକି କିଛି କରିବାର ଦାୟିତ୍ୱ ଆମ ଉପରେ । ଅନେକ ସମୟ ଚୁପ୍ ରହିବା ପରେ ସିତାଂଶୁ ଖୁବ୍ ଗମ୍ଭୀର ଭାବରେ କହିଲେ—

—ହୁଁ, ଶ୍ୟାମଳେନ୍ଦୁ ତୁମ ଆବିଷ୍କାର ଆମ ସମସ୍ତଙ୍କୁ ବାଟ ଦେଖାଇ ଦେଇଛି । ଏଣିକି ଆମେ ଯଦି ଟିକିଏ ସାବଧାନ ହେବା, ତେବେ ପ୍ରକୃତ ଲୋକଟାକୁ ନିଶ୍ଚୟ ଧରି ପାରିବା । ମୁଁ ଭାବୁଛି, ଡେନସୋଭ୍ ପୁଣି ଆଜି ବା କାଲି ଭିତରେ କିଛିଟା ଗୋଳମାଳ କରିବାକୁ ଚେଷ୍ଟା କରିବ । ଆମେ ଚେଷ୍ଟା କଲେ ତାକୁ ଧରି ପାରିବା । ମୁଁ କହିଲି—

—ହଁ, ଠିକ୍ କଥା । ମୁଁ ପ୍ରସ୍ତାବ ଦେଉଛି ଆଜି ଓ କାଲି ଏହି ଦୁଇ ଦିନ ଆମେ ତିନିଜଣ ଖେଷ୍ଟକ୍ ଭିତରେ ଗୁପ୍ତରେ ପହରା ଦେବା । ତେବେ ପହରା କାମ ରାତି ବାରଟା ପରଠାରୁ ଆରମ୍ଭ କଲେ ଚଳିବ । ସିତାଂଶୁ କହିଲେ—

—ଆମ ଗୁଇନ୍ଦା ସାହେବଙ୍କ କଥା ଗ୍ରହଣ କରାଯାଉ । କ'ଣ କହୁଛ ରିନା ?

ଏତେ ବିପଦରେ ମଧ୍ୟ ଆମେ ହସିଉଠିଲୁ । ରିନା କହିଲା—

—ନିଶ୍ଚୟ ନିଶ୍ଚୟ, ଏଥିରେ ଭାବିବାର କ'ଣ ଅଛି ? ଆପଣ ସିତାଂଶୁ ସହ ଟିକେ ଶୀଘ୍ର ଯାଇ ଖେଷ୍ଟକ୍ ଭିତରେ ବସିଥିବେ । ମୁଁ ଆଉ ଶ୍ୟାମଳେନ୍ଦୁ ଠିକ୍ ରାତି ବାରଟାବେଳେ ସେଠାରେ ପହଞ୍ଚିବୁ । ହଁ, ଆପଣ ଅନ୍ତତଃ ଗୋଟାଏ ପିସ୍ତଲ ଯୋଗାଡ଼ କରି ଦେଇଥିବେ । ମୁଁ ଗୋଟାଏ ଟର୍ଚ୍ଚ ଆଉ ଗୋଛାଏ ଦଉଡ଼ି ନେଇଯିବି । କାଳେ ଦରକାରରେ ଆସିବ । ବର୍ତ୍ତମାନ ସନ୍ଧ୍ୟା ସାତଟା । ଠିକ୍ ବାରଟା ବେଳେ ଯାନ ଭିତରେ ଦେଖା ହେବ । କଳା ପୋଷାକ ପିନ୍ଧିବା ସୁବିଧାଜନକ । ନା କ'ଣ ଗୁଇନ୍ଦା ସାହେବ ?

—ହଁ, ନିଶ୍ଚୟ । ମୋର ସବୁ ଠିକ୍ ଅଛି । ମୋ ପାଇଁ ଅପେକ୍ଷା କରିବେନି । ଠିକ୍ ରାତି ବାରଟାବେଳେ ମୁଁ ଭେଷ୍ଟ୍ରିକ୍ ପାଖରେ ପହଞ୍ଚିବ ।

ମୁଣ୍ଡ ଉପରେ ଗୋଟିଏ ବିରାଟ ଦାୟିତ୍ୱ ନେଇ ଆମେ ସମସ୍ତେ ଉଠିଲୁ ।

## ଗୁପ୍ତଚର

ସମୟ କଟାଇବାକୁ ମୋ ରୁମ୍‌ରେ ବସି ଗୋଟିଏ ବହି ପଢ଼ୁଥିଲି । ରାତି ପ୍ରାୟ ସାଢ଼େ ଏଗାର ହେବ । ରିନା ପଶି ଆସିଲା । ସେ କଳା ଗାଉନ୍, କଳା ମୋଜା ଓ କଳା କାନ୍‌ଭାସ୍ ଯୋତା ପିନ୍ଧି ଗୋଟାଏ ବିଚିତ୍ର ରୂପ ଧରିଥାଏ । ମୁଁ ମୋର କଳା ପୋଷାକ ବାହାର କରି ପିନ୍ଧିଲି । ମୋ ପାଖରେ ତିନଟା ବ୍ୟାଟେରି ଥିବା ଗୋଟିଏ ବଡ଼ ଟର୍ଚ୍ଚ ଥିଲା । ତାକୁ ବାହାର କରି ଧରିଲି । ରିନା ଗୋଛାଏ ସିଲ୍‌କ ଦଉଡ଼ି ଆଣିଥିଲା । ରାତି ଅଭିଯାନରେ ବାହାରିଲୁ ଆମେ କେତୋଟି ନିଶାଚର । ବାରଟାକୁ ପାଞ୍ଚ ଦଶ ମିନିଟ୍ ଥିଲା ଭେଷ୍ଟ୍ରିକ୍‌ର ପାଦଦେଶରେ ପହଞ୍ଚିଲୁ । ଗୋଟାଏ ବିରାଟ ଲୁହା ମଞ୍ଚ ଉପରେ ଭେଷ୍ଟ୍ରିକ୍‌ଟି ଠିଆ ହୋଇଥାଏ । ଅନ୍ଧାର ରାତିରେ ସେଇଟା ଗୋଟିଏ ବିରାଟ ଅସୁର ପରି ଦେଖାଯାଉଥାଏ । ଆଗରୁ ସିତାଂଶୁ ସେଇଠି ପହଞ୍ଚି ଠିଆ ହୋଇଥିଲେ । ଆମକୁ ଦେଖି କହିଲେ—ବେଶ୍ ଠିକ୍ ସମୟରେ ତମେ ସବୁ ଆସିଗଲ । ମୁଁ ଶେଷ ମୁହୂର୍ତ୍ତରେ ଗୃହଆଡ଼ ଟିକିଏ ଦେଖିନିଏ । ତୁମ ପାଖରେ ଟର୍ଚ୍ଚ ଲାଇଟ୍ ଅଛି ତ ଶ୍ୟାମଳେନ୍ଦୁ ? ବେଶ୍, ସେଇଟାକୁ ରିନାକୁ ଦିଅ, ଆଉ ଦଉଡ଼ି ଗୋଛାକ ତୁମେ ଧର । ସେ ଘୋର ଅଂଧାର ରାତିରେ ଗୃହଆଡ଼ ଟିକିଏ ଦେଖିନେଇ ଆଗପଛ ହୋଇ ଭେଷ୍ଟ୍ରିକ୍ ଉପରକୁ ଚଢ଼ିଲୁ ।

ମିନଟ୍ ପରେ ମିନଟ୍ ହୋଇ ସମୟ ଗଡ଼ି ଗ୍ଲଲା । ଯାନର ସେହି ଘୋର ଅଂଧାର ଭିତରେ ଆମେ ତିନୋଟି ଜୀଅନ୍ତା ପ୍ରାଣୀ ଛପି ରହିଲୁ । ଘଣ୍ଟାଏ ଗଲା, ତଥାପି କାହାର ଦେଖା ଦର୍ଶନ ନାହିଁ । ସିତାଂଶୁ ବଡ଼ ବ୍ୟସ୍ତ ହୋଇ ପଡ଼ିଲେ । ସେ ଚୁପ୍‌ଚୁପ୍ କହିଲେ—ଆଜ ବୋଧହୁଏ ସେ ଆସିବେନି । ମାତ୍ର ଏତେ ଶୀଘ୍ର ଧୈର୍ଯ୍ୟ ହରାଇବାକୁ ମୁଁ ବା ରୀନା ପ୍ରସ୍ତୁତ ହୋଇ ନ ଥିଲୁ । ସିତାଂଶୁଙ୍କୁ ଆଉ କିଛି ସମୟ ଅପେକ୍ଷା କରିବାକୁ କହିଲୁ । ଘଣ୍ଟାରେ ପ୍ରାୟ ସାଢ଼େ ଗୋଟାଏ ବାଜିଲା । ଆମେ ବଡ଼ ଅସ୍ଥିର ହୋଇ ଉଠିଲୁଣି । ଠିକ୍ ଏତିକିବେଳେ ହୋଷ୍ଟେଲ୍ ସିଡ଼ିରେ କିଏ ଜଣେ ଚଢ଼ିଲା ପରି ମନେହେଲା । ଆମେ ନିଜ ନିଜ ସ୍ଥାନରେ ଖୁବ୍ ଚୁପ୍‌ଚାପ୍ ବସିରହିଲୁ । ସତେ ଯେମିତି ଆମେସବୁ ପଥର ମୂର୍ତ୍ତି ପାଲଟି ଯାଇଛୁ ।

କାନ ଡେରିଲୁ । ଖୁବ୍ ଧୀରେ ଧୀରେ ପାଦ ଚପି ଚପି ଆମ ଯାନରେ କେହି ଜଣେ ଚଢ଼ୁଛି । ମୋ ଛାତି ଧପ୍ ଧପ୍ ପଡ଼ିଲା ଉଠିଲା । ଟିକେ ପରେ ଗୋଟାଏ କଳାଛାଇ ଯାନର କବାଟ ଆଡ଼େଇ ଭିତରେ ପଶିଲା । ନିଃଶ୍ୱାସ ବନ୍ଦ କରି ମୁଁ ଚାହିଁ ରହିଲି । ତା'ହାତରେ ଟର୍ଚ୍ଚ-ଟାଏ ଜଳି ଉଠିଲା । ଗୋଟାଏ କଟ୍‌କରି କ'ଣ ଶବ୍ଦ ହେଲା । ବୋଧ-ହୁଏ ସେ କିଛି କାଟି ପକାଇଲା । ମୋ ଡାହାଣ ପାଖରେ ସିତାଂଶୁ ଏକଦମ୍ ଅଧୀର ହୋଇ ପାଟିକଲେ—ରୀନା, ଟର୍ଚ୍ଚ ! ରୀନା ହାତରେ ଟର୍ଚ୍ଚଟା ଜଳିଉଠିଲା । ଆମେ ଦେଖିଲୁ, ବାମ ହାତରେ ଟର୍ଚ୍ଚଟା ଏବଂ ଡାହାଣ ହାତରେ ଗୋଟାଏ ତାରକଟା ଯନ୍ତ୍ର ଧରି ତାକୁ କାଟିବାକୁ ତିଆରି । ସିତାଂଶୁଙ୍କର ଚିତ୍କାର ଏବଂ ରୀନାର ଆକସ୍ମିକ ଟର୍ଚ୍ଚ ଜଳିବା ଫଳରେ ଲୋକଟା ଏକଦମ୍ ଆଶ୍ଚର୍ଯ୍ୟ ହୋଇଗଲା ।

ହଠାତ୍ ସେ ଧରିଥିବା ଡାଉଜଣଟା ଯନ୍ତ୍ରଟି ଶନା ଆଡ଼େ ଫୋପାଡ଼ିଲା । ଶନା ଠିକଏ ନଇଁପଡ଼ି ନ ଥିଲେ ଡାଉଜଣଟା ଯନ୍ତ୍ରଟି ତା ମୁଣ୍ଡରେ ବାଜିଥାନ୍ତା । ପରେ ଦେଖିଲୁ, ସେଇଟା ଶନା ମୁଣ୍ଡରେ ନ ବାଜି ଭ୍ରେଷ୍ଟକ୍‌ର କାନ୍ଥରେ ଓହଳା ଯାଇଥିବା ବାରୋମିଟର (ବାୟୁଚାପ ମାପିବା ଯନ୍ତ୍ର) ରେ ବାଜି ତାକୁ ଖଣ୍ଡ ଖଣ୍ଡ କରିପକାଇଲା । ଏତିକିବେଳେ ସେ ଭ୍ରେଷ୍ଟକର ଦୁଆର ଆଡ଼କୁ ଡେଇଁ ପଡ଼ିଲା । ବୋଧହୁଏ ବାହାରି ପଳାଇବା ପାଇଁ ଉଦ୍ୟମ କରୁଥିଲା । ମାତ୍ର ମୁଁ ହାମୁଡ଼ି ହାମୁଡ଼ି ଯାଇ ଅନ୍ଧାରରେ ତା ଗୋଡ଼ ଦୁଇଟିକୁ ଟାଣିଦେଲି । ହଠାତ୍ ଅତର୍କିତ ଆକ୍ରମଣରେ ଭ୍ରେଷ୍ଟକର ଲୁହା ଚଟାଣ ଉପରେ ଦୁମ୍ କରି ମୁହଁମାଡ଼ି ପଡ଼ିଗଲା । ଠିକ୍ ଏତିକିବେଳେ ସିତାଂଶୁ ମେନ୍ ସୁଇଚଟା ଅନ୍ କରି ସେ ଲୋକ ଉପରକୁ ଝାମ୍ପି ପଡ଼ିଲେ । ଏପର୍ଯ୍ୟନ୍ତ ଆମେ ଲୋକଟିକୁ ଭଲ କରି ଦେଖି ନ ଥାଉ । ଶନାର ଟର୍ଚ୍ଚ ଆଲୁଅରେ ଧସ୍ତା ଧସ୍ତି ଚାଲିଥାଏ । ଲୋକଟି ପକେଟରୁ ଏକ ପିସ୍ତଲ ବାହାର କରି ଧରିଥିଲା ; ମାତ୍ର ଆକସ୍ମିକ ଭାବେ ପଡ଼ିଯିବାରୁ ତାର ସଦ୍‌ବ୍ୟବହାର କରି ନ ଥିଲା । ସିତାଂଶୁ ତାହା ହସ୍ତରୁ ପିସ୍ତଲ ଛଡ଼ାଇ ନେଲେ । ଲୋକଟାର ଆଣ୍ଠୁରେ ଖୁବ୍ ଆଘାତ ଲାଗିଥିଲା । ବଡ଼ କଷ୍ଟରେ ଉଠି ଠିଆହେଲା । ଆମେ ଦେଖିଲୁ ସ୍ୱୟଂ ଡେନସୋଭ । ଦେହଟାସାରା କଳା ପୋଷାକରେ ଆବୃତ । ଆମେ ପାଖେଇ ଆସିଲୁ ।

ସିତାଂଶୁଙ୍କ ଆଖି ଦୁଇଟା ଜଳୁଥାଏ । ହାତରେ ଦୁଇଟା ପିସ୍ତଲ ଚକ୍‌ଚକ୍ କରୁଥାଏ । ଦାନ୍ତ ଚାପି ଚାପି କହିଲେ, "କ'ଣ ବାବୁ ! ଧରା ତ ପଡ଼ିଗଲ, କିଛି କରିବାର ଅଛି ? ପାପିଷ୍ଠ, ତୁମେ ହିଁ ତା'ହେଲେ ଏଇ କାମ କରିଥିଲ । ତୁମେ ହିଁ ଡକ୍ଟର ମହାପାତ୍ରଙ୍କର ଗବେଷଣାଗାରରୁ କାଗଜପତ୍ର ଚୋରି କରୁଥିଲ ? ଆଉ ଆଜି........।" ପ୍ରଚଣ୍ଡ କ୍ରୋଧରେ ସିତାଂଶୁ ଥରି

ଉଠିଲେ । ଦୁଇଟାଯାକ ପିସ୍ତଲ ଡେନସୋଭ୍‌ର ଛାତିକୁ ଦେଖାଇ ସେ ଗର୍ଜ୍ଜି ଉଠିଲେ—"ଡେନସୋଭ୍, ଦେଖି ପାରୁଛ, ମୁଁ କି ପଦାର୍ଥ ଦୁଇଟା ତୁମ ଛାତିକୁ ଲକ୍ଷ୍ୟକରି ଧରିଛି ? ଏଇ ମୁହୂର୍ତ୍ତରେ ଏମାନେ ଆଗ୍ନେୟଅସ୍ତ୍ର ଦୁଇଖଣ୍ଡି ତୁମକୁ ସମ୍ବର୍ଦ୍ଧନା ଜଣାଇଥାନ୍ତେ, ମାତ୍ର ତୁମର ସୌଭାଗ୍ୟ, ମୁଁ ତୁମ ପରି ଗୋଟାଏ ହୀନ ବିଶ୍ୱାସଘାତକର ରକ୍ତରେ ଆମର ପବିତ୍ର ହେଷ୍ଟିକ୍‌କୁ ରକ୍ତାକ୍ତ କରିବାକୁ ଚାହେଁନା । ଏତେଦିନ ଧରି ଜନ୍ ଗ୍ଲେନ୍‌ର ଗୁପ୍ତଚର ସାଜି ଆମ ଆଖିରେ ଧୂଳି ପକେଇ ଆସିଥିଲ । ହାୟରେ ଡେନସୋଭ୍ ! ନିଜର ଜାତି, ନିଜ ଦେଶ ଛାଡ଼ି ଅନ୍ୟ ବାହାର ଦେଶର ଟଂକା ବଳରେ ତୁମେ ନିଜ ଲୋକଙ୍କ ଗଳାରେ ଛୁରି ଦେବାକୁ ବସିଥିଲ ! ହଉ, ଏଥର ଦୁଇଟିଯାକ ହାତ ଦେଖାଅ ତ । ହଁ, ଶୀଘ୍ର ଦୁଇଟାଯାକ ହାତ । ଦେଖ, ଡେରି କଲେ ବା କିଛି ଦୁଃସାହସ କଲେ ଏଇ ପିସ୍ତଲ ତାହାର ଉତ୍ତର ଦେବ । ବେଶ୍, ସୁନା ପିଲା ।" ସିତାଂଶୁ ପିସ୍ତଲ ଦୁଇଟା ଧରି ଆଉଟିକେ ଆଗେଇ ଆସିଲେ । ଆମେ ଭାବିଥିଲୁ ସିତାଂଶୁ ଲୋକଟିକୁ ଶେଷ କରିଦେବେ ବୋଲି, ମାତ୍ର ନିଜକୁ ସେ ଯଥେଷ୍ଟ ସଂଯତ କରିନେଲେ । ମୁଁ ତାଂକ ଆଦେଶର ସଂକେତ ବୁଝି ପାରିଲି । ଡେନସୋଭ୍‌ର ହସ୍ତ ଦୁଇଟିକୁ ଖୁବ୍ ଜୋର୍‌ରେ ବାନ୍ଧି ପକାଇଲି ।

ଡେନସୋଭ୍ ଅପମାନ ଓ କ୍ରୋଧରେ ଥରୁଥାଏ । ମାତ୍ର ଯନ୍ତାରେ ପଡ଼ିସାରିଲା ପରେ ଆଉ ସେ କ'ଣ କରନ୍ତା ? ଏଥର ଆମ ଜୟଯାତ୍ରା ଆରମ୍ଭ ହେଲା । ସିତାଂଶୁ ସେ ଦଉଡ଼ିଟିକୁ ଧରି ଆଗେ ଆଗେ ଚାଲିଲେ । ଆମେ ହେଷ୍ଟିକ୍‌ର ଦ୍ୱାର ବନ୍ଦ କରିଦେଇ ତାଙ୍କ ପଛେ ପଛେ ଆସିଲୁ । ହଠାତ୍ ମୋର କ'ଣ ମନେହେଲା, ମୁଁ ରିନାକୁ ତା ଚାବିଗୋଛାକ ମାଗିଲି । ସେ କହିଲା—

—ଗୁଡ଼ବଗୋଲ୍ଲ କ'ଣ କରିବ ଶ୍ୟାମଳେନ୍ଦୁ ?

—ଶ୍ଳେର କରିବ । ମୁଁ କହିଲି ।

ମୋ କଥାରେ ମିତାଂଶୁ ଓ ରିନା ହସିଉଠିଲେ । ମୁଁ ରିନାର ଗୁଡ଼ବଗୋଲ୍ଲକ ଧରି ଡେଭନପୋର୍ଟ୍ର ରୁମ୍ ଆଡ଼େ ଗଲି । କିନ୍ତୁ ତା ରୁମ୍ ଖୋଲି ଥିଲା । ବୋଧହୁଏ କିଏ ସନ୍ଦେହ କରିବ ଭାବି ରୁମ୍‌ରେ ଚାବି ଦେଇ ନ ଥିଲା । ମାତ୍ର ବିଚରା ଜାଣି ନ ଥିଲା, ଅଜାଣତରେ ଫାନ୍ଦରେ ପଡ଼ିଗଲାଣି !

ଡେଭନପୋର୍ଟ୍ର ରୁମ୍‌ରେ ପଶି ମୁଁ ଖୋଜାଖୋଜି ଆରମ୍ଭ କରିଦେଲି । କ'ଣ ଖୋଜିବି, ସେତିକି ବି ଠିକ୍ କରି ଜାଣି ନ ଥିଲି । ମାତ୍ର କିଛି ଗୋଟାଏ ମିଳିବ ବୋଲି ଭାବି ଖୋଜିବାରେ ଲାଗିଗଲି । ପ୍ରଥମେ ତାର ଟେବୁଲ୍ ଡ୍ରୟର୍‌ଟା ଖୋଲି ପକାଇଲି । ଗୋଟାଏ ଲଫାପା ଭିତରେ ଗୋଟିଏ ଝିଅର ଫଟୋ ପାଇଲି । ତା ପଛରେ ଲେଖାଥିଲା, "ଉଇଲିୟମ୍ ବଟ୍‌ଲର୍‌ଙ୍କୁ ସ୍ନେହର ସହ ଅର୍ପଣ କଲି ।" ମୋର ମନେହେଲା, ଏ ଫଟୋଟି ଡେଭନପୋର୍ଟ୍ ପାଖକୁ କେମିତି ଆସିଲା ? ହୁଏତ ଉଇଲିୟମ୍ ବଟ୍‌ଲର୍ ନାଁ ଧରି ଏଠି ଗୁପ୍ତଚର ବୃତ୍ତି କରୁଥିଲା । ମୁଁ ପାଖରେ ଗୋଟିଏ ବାକ୍ସ ଦେଖିଲି । ରିନାଠାରୁ ଆଣିଥିବା ଗୁଡ଼ବଗୋଲ୍ଲକ ସେଥିରେ ପରୀକ୍ଷା କରୁ କରୁ ବାକ୍ସଟା ଖୋଲିଗଲା । ସେଥିରେ ଶାଢ଼ି ପଞ୍ଜାବୀ ଭର୍ତ୍ତି ହୋଇଥାଏ । ସେଗୁଡ଼ାକ ଖେଳାଇ ଖେଳାଇ ଗୋଟାଏ ଲଫାପା ପାଇଲି । ଲଫାପା ଭିତରେ ଗୋଟାଏ ଚିଠି—

ପ୍ରିୟ ବଟ୍‌ଲର୍‌,

ତୁମ ପ୍ରସ୍ତାବ ଲାଗି ମୁଁ ତୁମକୁ ଅଭିନନ୍ଦନ ଜଣାଉଛି। ଆଣବିକ ମୋଟରରେ ଯାନ୍ତ୍ରିକ ଗୋଳମାଳ କରଦେଇ ସବୁ କାଗଜପତ୍ର ଆଉ ସୂଚକ ଧରି ସେମାନେ ପୃଥିବୀ ଛାଡ଼ିବାର ଠିକ୍‌ ପୂର୍ବରୁ ଚାଲିଆସିବ। ବାଟରେ ସେମାନେ ତ ଧ୍ୱଂସ ପାଇଯିବେ, ଆଉ ଆମେ ପ୍ରଥମ ମହାକାଶଯାତ୍ରୀର ଗୌରବ ନେବା। ଉପକୂଳରେ ଷ୍ଟିମ୍ ଆସି ଅପେକ୍ଷା କରିବ। ତମେ ଠିକ୍ ସମୟରେ ଆସିବ। କାଗଜପତ୍ର ଆଣିବାରେ ତୁମର ପ୍ରଥମ ସଫଳତା ଲାଗି ଚିନ୍ତା କରିବ ନାହିଁ। ଚେଷ୍ଟା କର!

ତୁମର ଶୁଭାକାଂକ୍ଷୀ
ଜନ୍ ଗ୍ଲେନ୍

ଚିଠିଟା ପଢ଼ୁ ପଢ଼ୁ ମୁଁ ଘୃଣା ଓ କ୍ରୋଧରେ ଜଳିଉଠିଲି। ଇସ୍! ଏ ଲୋକଗୁଡ଼ାକ କି ଭୟଙ୍କର! ମୁଁ ଆଉ ଅପେକ୍ଷା ନ କରି ସେ ବାକ୍‌ସଟା ଉଠେଇଲି। ଫଟୋଟା ପକେଟ୍‌ରେ ପୂରାଇ ତରତର ହୋଇ ଦାଦାଙ୍କ ରୁମ୍ ଆଡ଼େ ବାହାରିଲି। ଏସବୁ କାମ କରିବାକୁ ମୋତେ ଦଶ ମିନଟ୍ ଖଣ୍ଡେ ଲାଗିଲା। ମୁଁ ଦାଦାଙ୍କ ପାଖରେ ପହଞ୍ଚିଲାବେଳକୁ ସେଠାରେ ଦାଦା, ପୋପ୍‌ଭିଚ୍, ସିତାଂଶୁ ଏବଂ ଆଉ କେତେକ ଇଂଜିନୟର ଆସି ଜୁଟି ହୋଇଥାନ୍ତି। ମୁଁ ସମସ୍ତଙ୍କୁ ଆଡ଼େଇ ଡେନସୋଭ୍ ଆଡ଼କୁ ଚାଲିଲି। ଅପରାଧୀ ପରି ମୁହଁପୋତି ଠିଆ ହୋଇଥାଏ। ମୁଁ ତାକୁ ଚାହିଁ କହିଲି—

—ଗୁଡ୍ ନାଇଟ୍ ବଟ୍‌ଲର୍

ମୋ କଥା ଶୁଣି ସାପ ମାରିଲା ପରି ଡେନସୋଭ୍ ଚମକି ପଡ଼ିଲା। ଦାଦା ଓ ଅନ୍ୟମାନେ ଆଶ୍ଚର୍ଯ୍ୟରେ ମୋ ଆଡ଼କୁ

ରହିଁଲେ । ମୁଁ ସମସ୍ତଙ୍କ ଆଗରେ ବାକ୍ସ ଖୋଲି କାଗଜପତ୍ର, ଚିଠି ଓ ଫଟୋ କାଢ଼ି ପ୍ରମାଣ କରିଦେଲି ଯେ ଡେନପୋର୍ଟର ପ୍ରକୃତ ନାମ ହେଲା ଉଇଲିୟମ୍ ବଟ୍‌ଲର୍ । ଆମେରିକାର ବୈଜ୍ଞାନିକ ଜନ୍ ଗ୍ଲେନ୍ ତାକୁ ଗୁପ୍ତଚର ଭାବରେ ଏଠି ନିଯୁକ୍ତ କରିଛନ୍ତି ଓ ସେଥିପାଇଁ ସେ ପାଉଛି ଅଜସ୍ର ଟଙ୍କା ।

ଏସବୁ ତଥ୍ୟ ଶୁଣି ସମସ୍ତେ ଅବାକ୍ ହୋଇଗଲେ । ଆମର ବିଶ୍ୱାସଘାତକ ଭାଇ ବଟ୍‌ଲର୍‌କୁ କି ଶାସ୍ତି ଦିଆଯିବ ? କେତେକ କହିଲେ ତାକୁ ସିଧା ଗୁଳି କରି ମାରି ଦିଆଯାଉ, କିନ୍ତୁ ଦାଦା ତାକୁ ଏପରି ନିଷ୍ଠୁର ଭାବରେ ମାରିଦେବାର ପକ୍ଷପାତୀ ନ ଥିଲେ । ଅନେକ ବିଚାର ପରେ ଠିକ୍ ହେଲା ଯେ ତାଠାରୁ ସବୁ କାଗଜପତ୍ର ଓ ଟଙ୍କା ପଇସା ଜବତ୍ କରି ଏକ ଡଙ୍ଗାରେ ମଝି ଦରିଆରେ ଛାଡ଼ି ଦିଆଯିବ । ଯଦି ଭାଗ୍ୟକ୍ରମେ ସେ ବଂଚିଯାଏ ତ ଭଲ, ନଚେତ୍ ତାର ଘୋର ଅପରାଧର ଶାସ୍ତି ସେ ଭୋଗିବ । ରାତି ପାହିଲେ ତାକୁ ଛାଡ଼ି ଦିଆଯିବ । ଆମ ଲୋକମାନେ ମଝି ଦରିଆରେ ଛାଡ଼ିଦେଇ ଆସିବା ପରେ ଆମେ ଟିକିଏ ଶାନ୍ତିରେ ନିଃଶ୍ୱାସ ମାରିଲୁ । ମନେ ମନେ ଭଗବାନଙ୍କୁ ଧନ୍ୟବାଦ ଜଣେଇ ଯେତେ ଶୀଘ୍ର ସମ୍ଭବ ପୃଥିବୀ ଛାଡ଼ିବାକୁ ଦାଦା ଠିକ୍ କଲେ ।

## ଜନ୍ ଗ୍ଲେନ୍

ତା ପରଦିନ ଉଠିଲାବେଳକୁ ନଅଟା ବାଜିଗଲା । ଶୂନ୍ୟ-ଯାନର ଲୁହା ଚଟାଣରେ ମୋର ଆଣ୍ଠୁ ବି ଟିକେ ଆଘାତ ପାଇଥିଲା । ସକାଳେ ଦାଦା, ପ୍ରଫେସର୍ ପୋପ୍‌ଭର୍, ସିତାଂଶୁ ଆଦି ମୋତେ ଦେଖିବାକୁ ଆସିଲେ । ମୁଁ ତ ସ୍ୱୀ ଭିତରେ ଜଣେ

'ବିଖ୍ୟାତ ବ୍ୟକ୍ତି' ହୋଇ ଯାଇଥିଲି । ମୁଁ ବିଶେଷ କିଛି ଆଘାତ ପାଇ ନ ଥିଲି । ଦାଦା ଟିକେ ଚିନ୍ତାକୁଳ ଥିବାଭଳି ମୋତେ ଜଣାଗଲା ।

ସେ କହିଲେ, "ଶ୍ରୋଷ୍ଟକ୍‌ର ଜଣେ ଯାତ୍ରୀ ତ କମିଗଲେ ପୋପ୍‌ଭର୍, ବର୍ତ୍ତମାନ ଆଉ କାହାକୁ ନେବା ? ଆଚ୍ଛା ସିତାଂଶୁ, ତୁମ ମତ କ'ଣ ?" ପ୍ରଫେସର୍ ପୋପ୍‌ଭର୍ ଟିକଏ ପରେ କହିଲେ—

—ଯେତେବେଳେ ଆମେ ଜାଣିଥାନ୍ତୁ ଯେ ଆମର ତଥା-କଥିତ ଡେନପୋଭ୍ ଅନ୍ତର୍ଦ୍ଧାନ ହୋଇଗଲେ, ସେତେବେଳେ କିନ୍ତୁ ଆମ ସମସ୍ୟା ସମାଧାନ କରିବାକୁ କେହି ନ ଥାନ୍ତେ । ମହାଶୂନ୍ୟରେ ହିଁ ଆମ ସମସ୍ୟା ଚିରଦିନ ପାଇଁ ଲୋପ ପାଇ ଯାଇଥାନ୍ତା ।

ଆଉ ସେ ବିଶ୍ୱାସଘାତକର ନାଁ ପକାଅ ନା । ତା ନାଁ ଶୁଣିଲେ ମୋ ରକ୍ତ ତାତି ଯାଉଛି । ଓଃ ! ଆମ ସରଳତା ଓ ବିଶ୍ୱାସର ସୁଯୋଗ ନେଇ ଲୋକଟା କ'ଣ ନ କରୁଥିଲା ? ଗୁଡ଼, ଆମ ସଂଗରେ ଆମ ସହକାରୀ ଇଂଜିନିୟର ଆଲେକ୍‌ଜାଣ୍ଡ୍ରର ଫେଡେରେଙ୍କୋଙ୍କୁ ନେଲେ ତ ଚଳିବ । ମାତ୍ର ଦାଦା ରାଜି ହେଲେ ନାହିଁ । ସେ କହିଲେ—

—ତାଂକୁ ନେଲେ ଚଳନ୍ତା ଯେ, ମାତ୍ର କଥାଟା ହେଲା ତାଙ୍କର ପିଲାପିଲି ଅଛନ୍ତି । ଏ ଦୁଃସାହସିକ କାମରେ ଯେ କ'ଣ ଘଟିବ, ଆମେ ତା ତ କହିପାରିବା ନାହିଁ । ତାହାଛଡ଼ା ଆମେ ପୃଥିବୀ ଛାଡ଼ିଲା ପରେ ବି ଏଠି ଅନେକ କାମ ବାକି ରହିଛି । ଆଲେକ୍‌ଜାଣ୍ଡ୍ରଙ୍କ ପରି ଜଣେ ଦକ୍ଷ ଇଂଜିନିୟର ପୃଥିବୀରେ ରହିବା ଆବଶ୍ୟକ । ଏହାପରେ ସମସ୍ତେ ନୀରବ ହୋଇଗଲେ । ମନେ ମନେ ଜଣେ ଯାତ୍ରୀ ଚିନ୍ତା ଖୋଜୁଥାନ୍ତି ।

ଏତିକିବେଳେ ମୁଁ ଗୋଟିଏ ସୁଯୋଗ ପାଇଗଲି । ମହାଶୂନ୍ୟରେ ଟିକେ ବୁଲି ଆସିବାକୁ ମୋର ଖୁବ୍ ଇଚ୍ଛା ଥିଲା । ମାତ୍ର ଦାଦାଙ୍କୁ କହିବାକୁ ତ ସୁଯୋଗ ପାଉ ନ ଥିଲି । ଏତିକିବେଳେ କହିଲି—

—ଆଚ୍ଛା ଦାଦା, ତମେ ମତେ ନେଉନ ? ମୁଁ ତ ସବୁ ଯନ୍ତ୍ରପାତି କଥା ବେଶ୍ ଜାଣିଗଲିଣି । ମତେ ଯେଉଁ କାମତକ ଦେବ, ମୁଁ ସେ ସବୁ କରିପାରିବି ବୋଲି ମୋର ବିଶ୍ୱାସ ଅଛି । ତମକୁ ସବୁ କାମରେ ସାହାଯ୍ୟ କରିବାକୁ ଜଣେ ବିଶ୍ୱାସୀ ଲୋକ ତ ଦରକାର ।

ମୋ କଥା ଶୁଣି ଦାଦା ଟିକିଏ ହସିଲେ । ମାତ୍ର ହଠାତ୍ ରାଜି ହେଲେନି । ମୁଁ ଚାହିଁ ରହିଥାଏ—ସୁପ୍ରିମ୍ କୋର୍ଟରୁ କି ଖବର ମିଳୁଛି ! ଏତିକିବେଳେ ପ୍ରଫେସର୍ ପୋପ୍ଭିର୍ କହିଲେ—

—ଶ୍ୟାମଳେନ୍ଦୁ, ମହାଶୂନ୍ୟରେ ଉଡ଼ିବାକୁ ତ ତୁମର ଯଥେଷ୍ଟ ବୟସ ହୋଇନି । ତା ଛଡ଼ା ଯଦି କିଛି ଘଟେ......

—ନା, ସେଥିପାଇଁ ମୋର କିଛି ଚିନ୍ତା ନାହିଁ । ଦାଦା ତ ପାଖରେ ଅଛନ୍ତି । ମୁଁ ପ୍ରଫେସର୍ଙ୍କୁ ଉତ୍ତର ଦେଲି । ଯାହାହେଉ ଇଂଜିନିୟର ସିତାଂଶୁ ମୋ ପାଇଁ ଓକିଲାତି କଲେ—

—ଡକ୍ଟର୍, ସତରେ ଶ୍ୟାମଳେନ୍ଦୁର ସାହସ ଓ ଉତ୍ସାହକୁ ପ୍ରଶଂସା କରିବାର କଥା । ସେ ଯେଉଁ ସାହସରେ ବଟ୍ଲର୍କୁ ଧରିବାରେ ସାହାଯ୍ୟ କଲା, ଆମେ କ'ଣ ତାହା ଭୁଲିପାରିବା ? ତା ଛଡ଼ା ତାର ନିଜର ଉତ୍ସାହ ଓ ଦାୟିତ୍ୱବୋଧ ତ କମ୍ ନାହିଁ । ବରଂ ତାକୁ ସାଙ୍ଗରେ ନେବା ଭଲ ।

ଦାଦା ଟିକିଏ ଚିନ୍ତା କଲେ । ତାପରେ କହିଲେ—

—ଆଚ୍ଛା, ଯଦି ସେ କହୁଛନ୍ତି ତେବେ ଯାଉ ।

ଆନଂଦରେ ମୁଁ ଖଟରୁ ଝାଉମତ୍ ଡେଇଁପଡ଼ିଲି । ମୋ ଗୋଡ଼ ହାତର ଦରଜସବୁ. କେଉଁଆଡ଼େ ଉଡ଼ିଗଲା । ଖୁବ୍ ଉତ୍କଣ୍ଠାରେ ପଚାରିଲି—

—ତାହାହେଲେ ଦାଦା, ମୋର ଯିବାର ସବୁ ଠିକ୍ ହୋଇଗଲା ତ ?

ମୋର ଅସମ୍ଭବ ଉତ୍ସାହ ଓ ଆଗ୍ରହ ଦେଖି ଦାଦା ଟିକିଏ ହସିଲେ ଓ କହିଲେ—

—ହଁ

ବେଶ୍, ଏଥର ମୋର ଆନନ୍ଦ ଆଉ ଦେଖେ କିଏ ? ପୃଥିବୀ ଛାଡ଼ିବାକୁ ଆଉ ମାତ୍ର ପାଞ୍ଚ ଦିନ ଥାଏ । ଭୋଷ୍ଟକ୍‌ରେ ଦାଦା, ପ୍ରଫେସର୍ ପୋପ୍‌ଭିଚ୍, ଇଂଜିନିୟର ସିତାଂଶୁ, ନିନା ପାଭ୍‌ଲୋଭ୍‌ନା, ରିନା ଓ ମୁଁ ଯିବାର ଠିକ୍ ହୋଇଗଲା । ସକାଳେ ବୋଷେଇ ସାରି ନିନା ଓ ମୁଁ ଜିନିଷପତ୍ର ଲଦାଲଦିର ତଦାରଖ କଲୁ ।

ଦୁଇ ଦିନ ପରେ, ସମୟ ପ୍ରାୟ ଦିନ ଏଗାରଟା, ଖିଆପିଆ ସାରି ମୁଁ, ନିନା ଓ ରିନା ବସି ଗପସପ କରୁଛୁ, ଡାକ ପିଅନ ଆସି ଗୋଟାଏ ଟେଲିଗ୍ରାମ୍ ଦେଲା । ଦାଦା ଏତେ କାର୍ଯ୍ୟବ୍ୟସ୍ତ ଥାଆନ୍ତି ଯେ ତାଙ୍କୁ ଟିକିଏ ହେଲେ ବ୍ୟସ୍ତ ନ କରିବାକୁ ଆମକୁ ସାବଧାନ କରିଦେଇ ଥାଆନ୍ତି । ଏଣୁ ଟେଲିଗ୍ରାମ୍‌ଟା ରିନା ଖୋଲିଲା । ସେଇଟା ପଢ଼ି ଆମେ ଝାଉମତ୍ ଅବାକ୍ ହୋଇଗଲୁ । ଟେଲିଗ୍ରାମ୍ ଆସିଥିଲା ସ୍ୱୟଂ ଜନ୍ ଟ୍ଲେନ୍‌ଙ୍କ ପାଖରୁ । ସେ ଟେଲିଗ୍ରାମ୍ କରିଥିଲେ—ଆସନ୍ତା କାଲି ଲେନିନ୍‌ଗ୍ରାଡ୍ ଯାଉଛି । ରେଳଷ୍ଟେସନରେ ମୋତେ ବାରଟା

ବେଳେ ଭେଟିବେ । ଆମେ ସବୁ ପରସ୍ପରକୁ ଚାହିଁଲୁ । ବଟ୍‌ଲର୍ ଗଲା ପରେ ଆମେ ଟିକିଏ ଶାନ୍ତିରେ ଥିଲୁ । ଏବେ ଜନ୍ ଗ୍ଲେନ୍‌ଙ୍କର ଆବିର୍ଭାବ କାହିଁକି ? ଆହୁରି କିଛି ବିପଦ ବାକି ରହିଗଲା କି ? ଏ କଥା ଦାଦାଙ୍କୁ ଜଣେଇବୁ । ଆମେ ତାରିଖ ଦେଖିନେଲୁ । ଜନ୍ ଗ୍ଲେନ୍ ଆଜି ବାରଟାବେଳେ ପହଂଚିବା କଥା । ଟେଲିଗ୍ରାମ୍‌ଟା ଧରି ଦାଦାଙ୍କ ପାଖକୁ ବାହାରିଲୁ ।

ଦାଦା ଏ ଖବର ଶୁଣି ଟିକିଏ ବିବ୍ରତ ହେଲେ । ଟିକିଏ ଭାବି ମତେ ଆଉ ରିନାକୁ କହିଲେ ଆମେ ଯାଇ ଟିକିଏ ନେଇ ଆସିବୁ । ଠିକ୍ ବାରଟାରେ ଆମେ ଷ୍ଟେସନରେ ପହଂଚିଲୁ । ମୁଁ ତାଙ୍କ ବ୍ରିଫ୍‌କେସ୍‌ଟି ଧରିଲି; ଆଉ ରିନା ତାଂକୁ ଜିପ୍‌ରେ 'ରହସ୍ୟପୁରୀ'କୁ ନେଇଆସିଲା । ଆମେ ଲକ୍ଷ୍ୟକଲୁ ସେ ଉଦ୍ଧତ ପ୍ରକୃତିର ଲୋକ । କାହାକୁ ଖାତିର କରନ୍ତି ନାହିଁ ସେ । ରହସ୍ୟ-ପୁରୀରେ ପହଂଚିବା ପରେ ପରେ ଦାଦାଙ୍କ ସହ ସାକ୍ଷାତ୍ କରିବାକୁ ସେ ଚାହିଁଲେ । ଆମେ ତାଂକୁ ଦାଦାଙ୍କ ପାଖକୁ ନେଇଗଲୁ । ଦାଦା ଗବେଷଣାଗାରରେ ପ୍ରଫେସର୍ ପୋଡ୍‌ଭର୍ ଏବଂ ସିତାଂଶୁ ମହାନ୍ତିଙ୍କ ସହ ଆଲୋଚନା କରୁଥାନ୍ତି । ଜନ୍ ଗ୍ଲେନ୍ ପହଂଚିଲେ । ଦାଦା ଓ ଅନ୍ୟମାନେ ତାଙ୍କ ଉପରେ ଏତେ ରାଗି ଯାଇଥିଲେ ଯେ ଅନ୍ତତଃ ଭଦ୍ରତା ଦୃଷ୍ଟିରୁ ସମ୍ଭାଷଣ ଜଣାଇବାକୁ ବି ଭୁଲିଗଲେ । ଦାଦା ସିଧା ପଚାରିଲେ—

—ଆଉ ଆପଣ କାହିଁକି ଆସିଲେ ? ଆପଣଙ୍କ ବଟ୍‌ଲର୍‌କୁ ତ ଆମେ ବେଶ୍ ସମ୍ଭାଷଣ ଜଣାଇ ଗୁଡ଼ ଦେଇଛୁ । କି ହୀନ ପ୍ରକୃତିର ଲୋକ ଆପଣ ? ଦାଦାଙ୍କ ଆଖି କ୍ରୋଧରେ ଜଳିଉଠିଲା । ଦାଦା ଏମିତି ରାଗିବାର ଆଗରୁ ଦେଖି ନ ଥିଲି । ଜନ୍ ଗ୍ଲେନ୍ ଶାନ୍ତ କଣ୍ଠରେ କହିଲେ—

—ଡକ୍‌ଟର୍‌, ଆପଣ ବୋଧହୁଏ ଖୁବ୍ ରୁଷ୍ଟ ହୋଇ ଉଠୁଛନ୍ତି ।

—ଆଃ ! ଯାହା କହିବାର କୁହନ୍ତୁ, ଏତେ ଭୂମିକାର ପ୍ରୟୋଜନ ନାହିଁ । ଖୁବ୍ ପାଟିକରି ସିତାଂଶୁ କହିଲେ । ଜନ୍ ଗ୍ଲେନ୍ ଏଥର ପ୍ରକୃତରେ ରାଗି ଉଠିଲେ । ଚଷମା ତଳୁ ତାଙ୍କ ଆଖି ଦୁଇଟା ଜଳିଉଠିଲା । ସେ କହିଲେ—

—ଦେଖନ୍ତୁ, ଏଇଟା ସାଧାରଣ ଭଦ୍ରାମିର ପରିଚୟ ନୁହେଁ ।

ପରିସ୍ଥିତି ଖରାପ ଆଡ଼କୁ ଗତି କରୁଥିବା ସମୟରେ ପ୍ରଫେସର୍ ପୋପ୍‌ଭର୍ କହିଲେ—

—ଆମ୍ଭେମାନେ ସବୁ ବୈଜ୍ଞାନିକ । ଏଣୁ ପ୍ରତ୍ୟେକ କଥାକୁ ବୈଜ୍ଞାନିକ ଦୃଷ୍ଟିକୋଣରୁ ବିଚାର ନ କରି ଏମିତି କଳି କରିବା ଉଚିତ ନୁହେଁ । ହଉ ଜନ୍ ଗ୍ଲେନ୍, ଆପଣଙ୍କର ଆସିବାର ଉଦ୍ଦେଶ୍ୟଟା ପ୍ରଥମେ କୁହନ୍ତୁ ତ ? ଆମର ମଧ୍ୟ ସମୟର ଅଭାବ ।

କିଛି ସମୟ ପରେ କ୍ରୋଧକୁ ଶାନ୍ତ କରି ଜନ୍ ଗ୍ଲେନ୍ କହିଲେ—

—ହଁ ଡକ୍‌ଟର୍ ମହାପାତ୍ର, ମୁଁ ଆପଣଙ୍କ ପାଖକୁ ଆସିଛି ଗୋଟାଏ ପ୍ରସ୍ତାବ ନେଇ ।

—କୁହନ୍ତୁ । ଦାଦା ସଂକ୍ଷେପରେ ଉତ୍ତର ଦେଲେ ।

—ଆଚ୍ଛା, ଆମେ ଏଠି ଏକାଠି ଅଭିଯାନ ଚଳେଇଲେ କେମିତି ହୁଅନ୍ତା ? ବୋଧହୁଏ ହଠାତ୍ ସୂର୍ଯ୍ୟଟା କକ୍ଷଚ୍ୟୁତ ହୋଇଥିଲେ ବି ଦାଦା ଏତେ ଆଶ୍ଚର୍ଯ୍ୟ ହୋଇ ନ ଥାନ୍ତେ । କିଛି ସମୟ ଜନ୍ ଗ୍ଲେନ୍‌ଙ୍କୁ ସିଧା ଗୁହିଁ କହିଲେ—

—ଆପଣ ତାହାହେଲେ କହୁଛନ୍ତି, ଆପଣ ଆସି ଆମ ସଂଗଠରେ ଯୋଗ ଦେବେ ?

—ନଚେତ୍ ଆପଣ ମୋ ସହ ଯୋଗ ଦେଇପାରନ୍ତି । ଜନ୍ ଗ୍ଲେନ୍ କହିଲେ ।

—ଡକ୍ଟର୍ ଜନ୍ ଗ୍ଲେନ୍ ବୋଧହୁଏ ଥଟ୍ଟା କରିବା ଆରମ୍ଭ କଲେଣି । ସିତାଂଶୁ ପୁଣି ରାଗି ଉଠିଲେ । ମାତ୍ର ଜନ୍ ଗ୍ଲେନ୍ ଶାନ୍ତ ଓ ଅବିଚଳିତ । ସେ କହିଲେ—

—ଆପଣ କଥାଟାକୁ ଏମିତି ଭାବୁଛନ୍ତି କାହିଁକି ?

—ବଟ୍ଲର୍ ଦସ୍ୟୁଗିରି କରୁ କରୁ ଧରା ପଡ଼ିଯିବାରୁ ଏ ପୁଣି ଗୋଟିଏ ନୂଆ ଗଳ୍ପ ଦେଖାଉଛନ୍ତି ? ସିତାଂଶୁ ସିଧା ଉତ୍ତର ଦେଲେ ।

—ମୋର ବି ଠିକ୍ ସେହି ବିଶ୍ୱାସ । ଦାଦା କହିଲେ ।

ଜନ୍ ଗ୍ଲେନ୍ ଟିକିଏ ବିବ୍ରତ ହୋଇପଡ଼ିଲେ । ଶାନ୍ତ କଣ୍ଠରେ ଉତ୍ତର ଦେଲେ—

—ହଁ, ମୁଁ ସବୁ ଶୁଣିଛି । ତାଙ୍କୁ ଆପଣମାନେ ସମୁଦ୍ରରେ ଛାଡ଼ିଦେବାର ଘଣ୍ଟାଏ ଦୁଇ ଘଣ୍ଟା ପରେ ଗୋଟାଏ ଆମେରିକା ହେଲିକପ୍ଟର ଉଦ୍ଧାର କଲା । ତାଙ୍କଠାରୁ ସବୁ କଥା ଶୁଣି ମୁଁ ତ ଏଠାକୁ ଆସିଛି । ବାସ୍ତବିକ୍ ସେଥିପାଇଁ ମୁଁ ଖୁବ୍ ଦୁଃଖିତ ।

ଦାଦା କହିଲେ—

—ଏବେ ଦୁଃଖ ପ୍ରକାଶ କରିବା ଆଦୌ ଆବଶ୍ୟକ ନାହିଁ । ଯେତେବେଳେ ପୃଥିବୀ ଜାଣିଥାନ୍ତା ଯେ କେତେଜଣ ମହାଶୂନ୍ୟଯାତ୍ରୀ ମହାକାଶରେ ବିସ୍ଫୋରଣ ଫଳରେ ଶୂନ୍ୟରେ ଲୀନ ହୋଇଗଲେ, ସେତେବେଳେ ଆପଣ ଦୁଃଖ ପ୍ରକାଶ କରିଥାନ୍ତେ ।

ତେବେ କଥାଟା ହେଲା ଏ ମହାଶୂନ୍ୟ ଅଭିଯାନରେ ଆମେ ଆପଣଙ୍କୁ ଟପିଯିବାକୁ ବସିଛୁ । ତେଣୁ ଏ ଗୌରବରେ ଆପଣଙ୍କର ଭାଗ ରହିବ ନାହିଁ ବୋଲି ଶେଷ ମୁହୂର୍ତ୍ତରେ ଆପଣ ଆମ ସହ ମିଶିଯାଇ କୌଣସି ପ୍ରକାରେ ଏ ଗୌରବରୁ କିଛି ପାଇଯିବା ଆଶାରେ ଏ ନୂଆ ଉଦ୍ୟମ ଚଳାଇଛନ୍ତି ।

—ଅବଶ୍ୟ ତାହା ଠିକ୍ ନୁହେଁ । କାରଣ ଆସନ୍ତା ସପ୍ତାହେ ଦୁଇ ସପ୍ତାହ ଭିତରେ ମୁଁ ବି ମଙ୍ଗଳ ଗ୍ରହରେ ଯାଇ ପହଞ୍ଚି ପାରିବ । ମୋର କହିବାର କଥା ହେଲା, ଆମ ଦୁଇ ଦେଶର ବୈଜ୍ଞାନିକମାନଙ୍କର ମିଳିତ ବୁଦ୍ଧି ଓ କୌଶଳ ପ୍ରୟୋଗ କଲେ ଅନ୍ତତଃ ମଙ୍ଗଳ ଗ୍ରହ ଅଭିଯାନଟା ଅଧିକ ନିରାପଦ ଓ ଫଳପ୍ରଦ ହୁଅନ୍ତା ।

—ଆଚ୍ଛା, ଧରାଯାଉ ଆମେ ଆପଣଙ୍କ ସହ ଏକ ମିଳିତ ରାଜିନାମା କରିବୁ; ତେବେ ଆମର ଲାଭ ? ଦାଦା ପଚାରିଲେ ।

—ଆପଣ ବୋଧହୁଏ ଜାଣିଥିବେ ଡକ୍ଟର୍, ମଙ୍ଗଳରେ ଏମିତି ଗୋଟିଏ ଧାତୁ ଅଛି, ଯାହାକୁ ଲୁହା ବା ସୀସା ସହିତ ଏକ ନିର୍ଦ୍ଦିଷ୍ଟ ଅନୁପାତରେ ମିଶାଇଲେ ତାହା ସୁନା ପାଲଟିଯିବ ।

—ହିଁ, ଆମେ ତାହା ନାଁ ଇରିନସ୍କ ଦେଇଛୁ । ଦାଦା କହିଲେ ।

—ସେ ନାଁରେ କିଛି ଯାଏ ଆସେ ନା । ଆଚ୍ଛା, ଲୁହା ବା ସୀସା ସହିତ କେତେ ପରିମାଣରେ ମିଶାଇବାକୁ ପଡ଼ିବ, ସେ କଥା ଆପଣ ଜାଣିଥିବେ ତ ? ଜନ୍ ଗ୍ଲେନ୍ ପଚାରିଲେ । ସେ ବୋଧହୁଏ ଭାବିଥିଲେ ଆମେ ଏ କଥା

ଜାଣିନାହୁଁ । ଦାଦା ପ୍ରଫେସର୍ ପୋପ୍‌ଭର୍‌ଙ୍କୁ ଗୁହାଁଲେ । ପ୍ରଫେସର୍ ପୋପ୍‌ଭର୍ କହିଲେ—

—ହଁ, ଆମେ ସେତିକ ବି ଆବିଷ୍କାର କରିସାରିଛୁ । ତେବେ ଲୁହା ବା ସୀସା ସହିତ ଆଉ ଗୋଟାଏ କିଛି ପଦାର୍ଥ ଯେ ମିଶାଇବାକୁ ପଡ଼ିବ, ସେ କଥା ଆପଣ ଜାଣିଥିବେ ତ ଜନ୍ ଗ୍ଲେନ୍ ? ମୁଁ କେବଳ ସେହି ପଦାର୍ଥଟି ଆବିଷ୍କାର କରି ପାରିନି, ମାତ୍ର ମୋ ଗବେଷଣା ବେଶ୍ ଆଗେଇ ଗଲିଣି । ଆଉ ଅଳ୍ପ ଦିନ ଭିତରେ ସେଇଟା ଜାଣି ପାରିବି ବୋଲି ମୋର ବିଶ୍ୱାସ । ଜନ୍ ଗ୍ଲେନ୍ ଅଳ୍ପ ହସି କହିଲେ—

—ମୁଁ ସେ ଜିନିଷଟା ଆବିଷ୍କାର କରିସାରିଛି । ତାର ଅନୁପାତ ମଧ୍ୟ ।

—ତାହାହେଲେ ଆପଣ କ'ଣ କହୁଛନ୍ତି ଜନ୍ ଗ୍ଲେନ୍ ଆମେ ଯଦି ଆପଣଙ୍କୁ ସହଯୋଗ କରୁ, ଆପଣ ସେ ସୂତ୍ରଟି ଆମକୁ ଦେବେ ? ପୋପ୍‌ଭର୍ ପଚାରିଲେ ।

—ଠିକ୍ ସେଇଆ । ସେଇ ଧାତୁର ଉପଯୁକ୍ତ ବ୍ୟବହାର ଫଳରେ ଆମେ ପୃଥିବୀରେ କୁବେର ପାଲଟିଯିବା, ଯଦି ଆମେ ଠିକ୍ ପ୍ରୟୋଗଟି ଜାଣୁ । ଜନ୍ ଗ୍ଲେନ୍ କହିଲେ । ଦାଦା ଖୁବ୍ ବିରକ୍ତ ହୋଇଉଠିଲେ—

—ହଁ ହଁ, ତାହା ହୋଇପାରେ । ମାତ୍ର ଆମେ କୁବେର ପାଲଟିଯିବାକୁ ମଙ୍ଗଳ ଅଭିଯାନ କରୁନାହୁଁ । ତା ଛଡ଼ା ପ୍ରଫେସର୍ ପୋପ୍‌ଭର୍ ଖୁବ୍ ଅଳ୍ପ ଦିନ ଭିତରେ ଆମକୁ ସେ ଗୁପ୍ତ ଜିନିଷଟା ଦେଇପାରିବେ । ଜନ୍ ଗ୍ଲେନ୍ ପାଟିକରି ଉଠିଲେ—

—ନା ନା, ଆପଣ ନକଟରେ ଯେ ଜନଷଟା ଆବଷ୍କାର କର ପକାଇବେ, ସେ ଦୁରାଶା କରନ୍ତୁ ନାହିଁ । କାରଣ କୌଣସି ବଧିବଦ୍ଧ ଗବେଷଣା କର ମୁଁ ତାକୁ ବାହାର କରନାହିଁ । ଏମିତ ହଠାତ୍ ତାକୁ ଆବଷ୍କାର କର ପକେଇଲ । ଦାଦା ଖୁବ୍ ଦୃଢ଼ କଣ୍ଠରେ କହିଲେ—

—ଆମେ କନ୍ତୁ 'ହଠାତ୍' 'ଫଠାତ୍' ବାଲ୍ ନୋହୁଁ । ଆମେ ଯାହା ଆବଷ୍କାର କରୁ, ଯଥେଷ୍ଟ ବୁଦ୍ଧି, ଯଥେଷ୍ଟ ପରଶ୍ରମ ଓ ଯଥେଷ୍ଟ ବଜ୍ଞାନସମ୍ମତ ଯୁକ୍ତ ଉପରେ ତାହା ପ୍ରତଷ୍ଠିତ । ଆପଣଙ୍କ ପର ଆମେ ଶସ୍ତା ଆବଷ୍କାରକ ନୋହୁଁ ।

ଦାଦାଙ୍କ କଣ୍ଠରେ ବଦ୍ରୂପ ଭର ରହିଥିଲ । ଏ କଥା ଶୁଣି ଜନ୍ ଗ୍ଲେନ୍ ଗମ୍ଭୀର ହୋଇଗଲେ; ବୋଧହୁଏ ଅପମାନତ ବୋଧ-କଲେ ସେ । ପଚାରଲେ—

—ତାହାହେଲେ ଆପଣ ଆମ ସହ ମିଳତ ଗବେଷଣା କରବାକୁ ପ୍ରସ୍ତୁତ ନୁହନ୍ତ ?

—ଆଦୌ ନୁହେଁ । ଦାଦା ଖୁବ୍ ଗମ୍ଭୀରଭାବେ ଉତ୍ତର ଦେଲେ ।

—ଶ୍ୟାମଳେନ୍ଦୁ, ଏ ଭଦ୍ରଲୋକଙ୍କୁ ନେଇ ଯା । କଛି ଜଳଖିଆ ବ୍ୟବସ୍ଥା କର ଷ୍ଟେସନରେ ପହଂଚାଇ ଦେଇ ଆସିବୁ ।

ଜନ୍ ଗ୍ଲେନ୍ ଉଠି ଠିଆହେଲେ । ଖୁବ୍ କ୍ରୋଧ ଓ ଅପମାନରେ ତାଙ୍କ ଆଖି ଦୁଇଟା ଜଳଉଠିଲ । ବେଶ୍ ଉତ୍ତେଜତ ହୋଇ କହିଲେ—

—ଏଇଟା ତାହାହେଲେ ଆପଣଙ୍କର ଶେଷ କଥା ନା ? ହଁ, ଆପଣମାନେ ଖୁବ୍ ଗର୍ବରେ ଅନ୍ଧ ହୋଇପଡ଼ଛନ୍ତ । ମୁଁ

ବନ୍ଧୁଭାବରେ ଆପଣଙ୍କ ପାଖକୁ ଆସିଥିଲି, ମାତ୍ର ଆପଣମାନଙ୍କ ପାଖରୁ ଫେରୁଛି ଭୟଙ୍କର ଅପମାନିତ ହୋଇ । କିନ୍ତୁ ମନେ ରଖନ୍ତୁ, ଆପଣ ଦିନେ ଏ ପ୍ରକାର ଔଦ୍ଧତ୍ୟ ପାଇଁ ଅନୁତାପ କରିବେ । ମୋର ସାହାଯ୍ୟ ପ୍ରାର୍ଥନା କରିବେ ।

ଜନ୍ ଗ୍ଲେନ୍ ଖୁବ୍ ଚଞ୍ଚଳ ସେ ଘରୁ ବାହାରି ଯାଇ ସିଧା ଜିପ୍‌ରେ ବସିଗଲେ । ଆମେ ବାଧ୍ୟ ହୋଇ ଜିପ୍ ଚଳେଇ ଷ୍ଟେସନରେ ତାଙ୍କୁ ଛାଡ଼ିଦେଇ ଆସିଲୁ ।

## ସାଂଘାତିକ ଦୁର୍ଘଟଣା

ଆଉ ମାତ୍ର ଦୁଇ ଦିନ ବାକି ଥାଏ ପୃଥିବୀ ଛାଡ଼ିବାକୁ । ଖୁବ୍ ଜୋର୍‌ସୋର୍‌ରେ ଆମର ପ୍ରସ୍ତୁତି ଚାଲିଥାଏ । ମୁଁ ଜଣେ ଯାତ୍ରୀ । ଏଣୁ ଯାନ ଭିତରେ ରହି ସବୁ ଯନ୍ତ୍ରପାତି ଦେଖୁଥାଏ । ଭୋଷ୍ଟକ୍ ଭିତରେ ଦୂରବୀକ୍ଷଣ ଯନ୍ତ୍ର, ନାନା ପ୍ରକାର ତାପମାନ ଓ ବାୟୁ ମାପିବା ଯନ୍ତ୍ର, ଶୀତତାପ ନିୟନ୍ତ୍ରଣ ଯନ୍ତ୍ର, ଘଡ଼ିର ଆଦି ଅନେକ ଆଧୁନିକ କଳକବ୍‌ଜା ଖଂଜା ଯାଇଥାଏ । ଦୂରବୀକ୍ଷଣ ଯନ୍ତ୍ରରେ ମହାକାଶର ଗ୍ରହ ଓ ତାରକା ପର୍ଯ୍ୟବେକ୍ଷଣ କରାଯାଏ । ମହାଶୂନ୍ୟରେ ଭୋଷ୍ଟକ୍ ଯାଉଥିବାବେଳେ ମହାକାଶ ଯାନରୁ ଏହି ଯନ୍ତ୍ର ସାହାଯ୍ୟରେ ଲକ୍ଷ୍ୟ କରିହେବ ବୋଲି ପୋପ୍‌ଭିଚ୍ ଏହାକୁ ରଖିଲେ । ତାପମାନ ଯନ୍ତ୍ରରେ ବାହାର ଶୂନ୍ୟର ତାପ ମାପି ହେବ । ବାୟୁ ଚାପମାନ ଯନ୍ତ୍ରରେ ଯାନ ଭିତରର ବାୟୁ ପରିମାଣ ଓ ଉତ୍ତାପ ଜାଣି ହେବ । ଫଳରେ ଯାନ୍ତ୍ରିକ ଉପାୟରେ ବାହାରୁ ବାୟୁ ସଂଗ୍ରହ କରି ଭିତରର ଦୂଷିତ ବାୟୁ ବାହାରକୁ ଛାଡ଼ିଦେବା ଖୁବ୍ ସହଜ ହେବ । ତା ଛଡ଼ା ଭୋଷ୍ଟକ୍ ତ ଶୀତତାପ ନିୟନ୍ତ୍ରିତ ହୋଇଥିଲା । କିନ୍ତୁ ଖୁବ୍ ଆଧୁନିକ

ଓ ଆବଶ୍ୟକ ଯନ୍ତ୍ର ହେଲା ଘଡ଼ିର । ଏଥିରେ ଗୋଟିଏ ଖୁବ୍ ଶକ୍ତିଶାଳୀ ଲେନ୍ସ ଥାଏ । ଏହା ଅନେକ ଦୂର ପର୍ଯ୍ୟନ୍ତ ପଦାର୍ଥର ସ୍ପଷ୍ଟ ସ୍ୱରୂପ ନିର୍ଦ୍ଧାରଣ କରେ । ରେଡ଼ିଓ ପରି ଗୋଟିଏ ବାକ୍ସରେ ପରଦାଟିଏ ଲାଗିଥାଏ । ଯନ୍ତ୍ରଟି ଯେତେ ଦୂର ଯାଏ ମହାକାଶକୁ ପର୍ଯ୍ୟବେକ୍ଷଣ କରେ, ସେତେ ଦୂର ଯାଏ ମହାକାଶରେ ଯାହା କିଛି ଥାଏ, ସେ ସବୁର ଛବି ଯାନ୍ତ୍ରିକ ପରଦା ଉପରେ ପଡ଼େ । ଆମ ଯାନରେ ଯେଉଁ ଘଡ଼ିର ଖଂଜା ଯାଇଥିଲା ସେଗୁଡ଼ାକ ଖୁବ୍ ବେଶି ଶକ୍ତିଶାଳୀ । କୋଟି କୋଟି ମାଇଲ ପର୍ଯ୍ୟନ୍ତ ପର୍ଯ୍ୟବେକ୍ଷଣ କରିବାର ଶକ୍ତି ତାର ଥାଏ । ସ୍ପେଷ୍ଟଶିପ୍‌ରେ ତିନୋଟି ଘଡ଼ିର ଲାଗିଥାଏ । ମଧ୍ୟମଟା ଅନ୍ୟମାନଙ୍କ ଅପେକ୍ଷା ଖୁବ୍ ବେଶି ଶକ୍ତିଶାଳୀ । ପୃଥିବୀ ଛାଡ଼ିଲା ପରେ ପୃଥିବୀକୁ ଲକ୍ଷ୍ୟ କରିବ ପ୍ରଥମଟି, ଆଉ ମଂଗଳରେ ପହଂଚିବା ପୂର୍ବରୁ ମଂଗଳ ଗ୍ରହକୁ ଲକ୍ଷ୍ୟ କରିବ ଶେଷଟି । ଅନନ୍ତ ମହାଶୂନ୍ୟ ମଧ୍ୟରେ ଆମେ ଆଗେଇ ଯାଉଥିବା-ବେଳେ ତାକୁ ପର୍ଯ୍ୟବେକ୍ଷଣ କରିବ ଅନ୍ୟଟି । ମହାଶୂନ୍ୟରେ କାଳେ ଯନ୍ତ୍ର କିଛି ବିଗିଡ଼ିଯିବ, ଏଇ ଆଶଂକାରେ ଦାଦା ତିନୋଟି ଘଡ଼ିର ରଖିବାପାଇଁ ପରାମର୍ଶ ଦେଇଥିଲେ ।

ଖୁବ୍ ମନଦେଇ, ଗୋଟାଏ ଯନ୍ତ୍ର ଦେଖି, କିଛିଟା ଲେଖା-ଲେଖି କରୁଛି, ଏତିକବେଳେ ଖୁବ୍ ଧୀରେ ଧୀରେ ଗୋଟାଏ ଘଣ୍ଟି ବାଜିଉଠିଲା । ମୁଁ କାନ ଡେରିଲି । ମୋର ମନେହେଲା ଶବ୍ଦଟା ବୋଧହୁଏ ଚଟାଣ ତଳୁ ଆସୁଛି । ଇଂଜନ୍ ପାଖରେ ଥିବା ଗୋଟିଏ କଣାରେ ତଳକୁ ଚାହିଁଲି, ମାତ୍ର ଅଂଧାରରେ କିଛି ଦେଖାଗଲା ନାହିଁ । ଖାଲି ଦେଖିଲି ଗୁଡ଼ାଏ ବ୍ୟାଟେରୀ ଧାଡ଼ି ଧାଡ଼ି ହୋଇ ଖଂଜା ଯାଇଛି । ଚଟାଣ ତଳେ ଆଣବିକ ମୋଟରଟା ଥାଏ । ମୋ ଡାହାଣ ପାଖରେ ଚଟାଣକୁ ଲାଗି ଠିକ୍ ଗୋଟାଏ

ଚାରିକୋଣିଆ ଲୁହାପ୍ଲେଟ୍ ଗୁଡ଼ାଏ ନଟ୍ ଦ୍ୱାରା ଖୁବ୍ ଦୃଢ଼ ଭାବରେ ଖଂଜା ଯାଇଥାଏ । ମୋତେ ଜଣାଗଲା ସେ ଶବ୍ଦଟା ଲୁହାପ୍ଲେଟ୍ ପଛରୁ ଆସୁଛି । ଶବ୍ଦଟା ଧୀରେ ଧୀରେ ବଢ଼ୁଥାଏ । ମୁଁ ଚାରିଆଡ଼େ ଅନୁସନ୍ଧାନ କଲି, ମାତ୍ର ଜାଣିପାରିଲି ନାହିଁ ଶବ୍ଦ କେଉଁଠାରୁ ଆସୁଛି । ମୁଁ ବ୍ୟସ୍ତ ହୋଇପଡ଼ିଲି । ଶବ୍ଦ ବି ଧୀରେ ଧୀରେ ବଢ଼ୁଥାଏ । ଏତିକବେଳେ ରିନା ଆସି ପହଞ୍ଚିଲା । ମତେ ଦେଖି କହିଲା—

—ଆରେ ଶ୍ୟାମଳେନ୍ଦୁ, ତୁମେ ଏଠି ବସିଛ । ମୁଁ ସିଆଡ଼େ ଖୋଜି ଖୋଜି·····ମୁଁ ତା ପାଟିରେ ହାତ ଦେଇ କଥା ବନ୍ଦ କରିଦେଇ କହିଲି—

—ଏଇ ଶୁଣ, ଏ ଶବ୍ଦ କେଉଁଠୁ ଆସୁଛି ।

ରିନା ଘଣ୍ଟି ଶବ୍ଦ ଶୁଣି ଭୟରେ ଚିତ୍କାର କରିଉଠିଲା । ତା ମୁହଁ ଧଳା କାଗଜ ପରି ଏକଦମ ଶୋତା ପଡ଼ିଗଲା । ହଠାତ୍ ମତେ କିଛି ନ କହି ମୋ ହାତ ଧରି ଟାଣିବାକୁ ଲାଗିଲା । କହିଲା—

—ଶ୍ୟାମଳେନ୍ଦୁ ! ଶ୍ୟାମଳେନ୍ଦୁ ! ଶୀଘ୍ର ଆସ; ଗୋଟାଏ ଘୋଟକେଣ୍ଟ ବି ଖୁବ୍ ବେଶି ମୂଲ୍ୟବାନ୍ । ବର୍ତ୍ତମାନ ଯାଇ ଡକ୍ଟର୍ ମହାପାତ୍ରଙ୍କୁ ଖବର ଦେବାକୁ ହେବ । ମୁଁ ବିସ୍ମିତ ହେଲି । କିଛି ପଚାରିବାକୁ ବି ଆଉ ସମୟ ନ ଥାଏ । ସେ ମତେ ଭେଷ୍ଟିକ୍ ବାହାରେ ଛାଡ଼ିଦେଇ ଦଉଡ଼ିଲା । ମୁଁ ବି ପଛେ ପଛେ ଦଉଡ଼ିଲି, ମାତ୍ର ବୁଝିପାରିଲି ନାହିଁ ଯାନରେ ଇମିତି କ'ଣ ଘଟି ଯାଇଛି । ରିନା ଆଉ ମୁଁ ପ୍ରାଣପଣେ ଦଉଡ଼ି ଗବେଷଣାଗାରରେ ପହଂଚିଲୁ । ଯେତେବେଳେ ଦାଦା, ପୋପ୍‌ଭର୍ ଏବଂ ସିତାଂଶୁ ବସି ଆଲୋଚନା କରୁଥାନ୍ତି । ରିନା ଚିତ୍କାର କରି କହିଲା—

—ଡକ୍‌ଟର୍ ! ଡକ୍‌ଟର୍ ! ଷ୍ଟେସ୍‌ନ୍‌ରେ ବିପଦ ଘଣ୍ଟି ବାଜୁଛି ।

ସମସ୍ତେ ଚମକି ପଡ଼ିଲେ । ଦାଦା ହଠାତ୍ ଖୁବ୍ ବିବ୍ରତ ହୋଇପଡ଼ିଲେ । ଫଙ୍ଗେ ଫଙ୍ଗେ ପାଟି କଲେ—

—ସିତାଂଶୁ, ତମ ବାମ ପାଖରେ ଯେଉଁ ନାଲି ସୁଇଚ୍ ରହିଛି, ତାକୁ ଚପି ଧର ।

ସାରା ରହସ୍ୟପୁରୀରେ ବିପଦ ଘଣ୍ଟି ବାଜିଉଠିଲା । ଯିଏ ଯେଉଁଠି ଥିଲେ, ସବୁ କାମ ଛାଡ଼ି ନିରାପଦ ସ୍ଥାନକୁ ଦୌଡ଼ିଲେ । ମୁଁ ବୁଝିଲି ଆମ ଯାନର କିଛି ଗୋଟାଏ ଭୟଂକର ଯାନ୍ତ୍ରିକ ଗୋଳମାଳ ଘଟି ଯାଇଛି । ମତେ ରିନା କହିଲା—

—ଶ୍ୟାମଳେନ୍ଦୁ, ଆମ ଆଣବିକ ମୋଟର ଉପରେ ବିପଦ ପଡ଼ିଛି । ଯେକୌଣସି ମୁହୂର୍ତ୍ତରେ ସମଗ୍ର ଶୂନ୍ୟଯାନ ସହ ଆମ ରହସ୍ୟପୁରୀଟା ବି ଧ୍ୱଂସ ପାଇଯାଇ ପାରେ । ଡକ୍‌ଟର୍ ମହାପାତ୍ର ଆଗରୁ ଏ ବିପଦ ଘଣ୍ଟି ଖଂଜିଥିଲେ ବୋଲି ଆମେ ଏ କଥା ଜାଣି ପାରିଲୁ । ମାଟି ତଳେ ନିରାପଦ ଘର ବି ତିଆରି ହୋଇଛି । ସମଗ୍ର ରହସ୍ୟପୁରୀ ଅଜଣା ଆତଂକରେ ଥରିଉଠିଲା । ଚୁରିଆଡ଼େ ଲୋକଙ୍କର ଚିତ୍କାର ଓ ଧାଁ ଦଉଡ଼ ଅବସ୍ଥାକୁ ଭୟଙ୍କର କରି ପକାଇଲା । ଦାଦା ବାରଣ୍ଡାରେ ଥାଇ ପାଟି କଲେ—

—ଆରେ ପ୍ରଫେସର୍, ସିତାଂଶୁ, ରିନା, ଶ୍ୟାମଳେନ୍ଦୁ, ଯାଅ ସେ ନିରାପଦ ଘରକୁ; ଚାଲିଯାଅ ଶୀଘ୍ର । ମୁଁ ଯାଉଛି ଷ୍ଟେସନ୍‌କୁ । ହଁ ରିନା, ଘଣ୍ଟିଟା କେତେ ଜୋର୍‌ରେ ବାଜୁଥିଲା ?

—ଖୁବ୍ ଧୀରେ । ରିନା ଉତ୍ତର ଦେଲା ।

ଦାଦା ଖୁବ୍ ବିବ୍ରତ ହୋଇ ପଡ଼ିଥାନ୍ତି, ମାତ୍ର ଆଦୌ ଧୈର୍ଯ୍ୟ ହରାଇ ନ ଥାନ୍ତି । କହିଲେ—

—ତାହାହେଲେ ଆମ ହାତରେ ଆଉ କେତୋଟି ମିନଟ୍ ଅଛି; ତମେ ସବୁ ଯାଅ ସେ ନିରାପଦ ଘରକୁ । ସମସ୍ତେ ଗଲେଣି ତ ?

ଦାଦା ହାତରେ ଧରିଥାନ୍ତି ଗୋଟିଏ ପେର୍‌କାସ୍ । ସେଇଟା ବୋଧହୁଏ ତାଂକ ହାତ ପାଖରେ ଥିଲା ; ତେଣୁ ସେଇଟା ଧରି ବାହାରିଲେ । ପୋପ୍‌ଭିର୍ ଆଉ ସିତାଂଶୁ ଦାଦାଙ୍କୁ ଏକୁଟିଆ ଛାଡ଼ିବାକୁ ଜମା ପ୍ରସ୍ତୁତ ନ ଥିଲେ । ସେମାନେ ହୁଏତ ତାଂକ କଥାରେ ପ୍ରତିବାଦ କରିଥାନ୍ତେ, ମାତ୍ର ଦାଦା ହଠାତ୍ ବଡ଼ପାଟିରେ କହିବାକୁ ଲାଗିଲେ—

—ନା ନା, ମୁଁ ଆଉ କାହାରି କଥା ଶୁଣିବାକୁ ପ୍ରସ୍ତୁତ ନୁହେଁ । ସମୟ ଅନେକ କମ୍ । ତମେ ସବୁ ଆଶ୍ରୟ ନିଅ । ଯଦି ବିସ୍ଫୋରଣ ହୋଇଯାଏ, ତେବେ ମୋ ପରେ ଏ ଉଦ୍ୟମ ଚାଲୁ ରଖିବ, ବନ୍ଦ କରିଦେବ ନାହିଁ ।

ଦାଦା ଏହା କହି ଦୌଡ଼ି ଦୌଡ଼ି ଚାଲିଗଲେ । ଅନ୍ୟମାନେ ବି ମାଟିତଳ ଆଶ୍ରୟ ଘରକୁ ଚାଲିଲେ । ଏ ମୁହୂର୍ତ୍ତରେ ଦାଦାଙ୍କର ଗଭୀର ଆତ୍ମବିଶ୍ୱାସ ଦେଖି ମୁଁ ଏକରକମ ମୂକ ପାଲଟି ଗଲି । ଓଃ ! କି ଧୈର୍ଯ୍ୟ ତାଂକର ! ମୋର ଭୟ ହେଲା, କାଳେ ଯଦି ଦାଦା ଏକୁଟିଆ ତାକୁ ମରାମତି କରି ନ ପାରନ୍ତି ! ବିସ୍ଫୋରଣ ଘଟିବାର ତ ସମ୍ଭାବନା ଅଧିକ । ମତେ ବଡ଼ ଖରାପ ଲାଗିଲା । ସମସ୍ତେ ନିରାପଦ ଘରକୁ ଦୌଡ଼ି ଚାଲିଗଲେ, ମାତ୍ର ମୁଁ ଏକମୁହାଁ ହୋଇ ଭେଷ୍ଟିକ୍ ଆଡ଼େ ଦୌଡ଼ିଲି । ପଛରେ ସିତାଂଶୁ, ରିନା,

ପୋପ୍‌ଭର୍ ଆହ୍ୱ ପାଟି କରୁଥାନ୍ତି, ମାତ୍ର ମୁଁ କାହା କଥା ନ ଶୁଣି ଦାଦାଙ୍କ ପାଖରେ ଯାଇ ପହଂଚିଲି ।

ଦାଦା ମତେ ଦେଖିବାମାତ୍ରେ ଘଡ଼ଘଡ଼ି ପରି ପାଟିଟାଏ କଲେ—ତତେ ଆସିବାକୁ କିଏ କହିଲା ? ପଳାଅ, ପଳାଅ—

ମାତ୍ର ମୁଁ ତ ପଳାଇଯିବାକୁ ଆସି ନ ଥିଲି । ଚୁପ୍ କରି ତାଂକ ମୁହଁକୁ ଚାହିଁ ଠିଆହୋଇ ରହିଲି । କିଛି ସମୟ ପରେ ସେ ଶାନ୍ତ କଣ୍ଠରେ କହିଲେ, "ଆଚ୍ଛା, ଗୋଟାଏ କାମ କର—ଏଇ ପେଚ୍‌କସ୍‌ରେ ସେଇ ଲୁହାପ୍ଲେଟ୍‌କୁ ଖୋଲି ପକାଅ—ଶୀଘ୍ର, ଶୀଘ୍ର ।" ବିପଦ ଘଣ୍ଟିର ଶବ୍ଦ ବଢ଼ୁଥାଏ । ମୋର ଆତଂକ ବି ଠିକ୍ ଘଣ୍ଟିର ତାଳରେ ବଢ଼ୁଥାଏ; ତଥାପି ପେଚ୍‌କସ୍‌ଟା ଧରି ପ୍ଲେଟ୍‌ଟା ଖୋଲିବାକୁ ଖୁବ୍ ଚେଷ୍ଟା କଲି । ଦାଦା କହିଲେ—

"ଏଇ ବ୍ୟାଟେରୀଗୁଡ଼ାକ ଭିତରୁ ଗୋଟାଏ କେମିତି ଫାଟି ଯାଇଛି, ଆଉ ତା ଭିତରୁ ଏସିଡ୍ ବାହାରି ଯାଇଛି । ସେ ଏସିଡ୍ ଯଦି ଏଇ ପ୍ଲେଟ୍ ଉପରେ ବହିଯାଇ ଆଣବିକ ମୋଟରରେ ଥିବା ଇଉରାନିୟମକୁ ସ୍ପର୍ଶ କରିବ, ତେବେ ଯେଉଁ ବିରାଟ ବିସ୍ଫୋରଣ ଘଟିବ, ସେଥିରେ ଏ ଶୂନ୍ୟଯାନ ସହ ଆମେ ସମସ୍ତେ ପୃଥିବୀର ବାୟୁମଣ୍ଡଳରେ ମିଳାଇ ଯିବାକୁ ଗୋଟାଏ ସେକେଣ୍ଡ ବି ଲାଗିବ ନାହିଁ । କିନ୍ତୁ ସେ ଏସିଡ୍ ବହିଯିବା ପୂର୍ବରୁ ପ୍ଲେଟ୍‌କୁ କାଢ଼ିଦେବା ଦରକାର ।" ମୁଁ ମୋର ସବୁ ଶକ୍ତି ଖର୍ଚ୍ଚ କରି କାମରେ ଲାଗିଗଲି । ବହୁତ କଷ୍ଟରେ ପାଞ୍ଚଟା ପେଚ ଖୋଲି ପକାଇଲି । ଏତିକିବେଳେ ଦାଦା ସେ ଫଟା ବ୍ୟାଟେରୀକୁ କାଢ଼ି ତା ସ୍ଥାନରେ ନୂଆ ବ୍ୟାଟେରୀ ଲଗାଉଥାନ୍ତି ।

ବିପଦ ଘଣ୍ଟିର ଶବ୍ଦ କ୍ରମେ କ୍ରମେ ବଢ଼ୁଥାଏ । ମୁଁ ଆତଙ୍କିତ ହୋଇ ପଚାରିଲି—

—ଦାଦା, ଆଉ କେତେ ସମୟ ରହିଲା ?

—ଠିକ୍ କହି ହେବ ନାହିଁ । ତେବେ ଗୋଟାଏ ଖଣ୍ଡେ ମିନିଟ୍ ଥିବ । ତୁ ସେ ପ୍ଲେଟ୍‌ଟା ଚଞ୍ଚଳ ଖୋଲିପକା । ଏ ପର୍ଯ୍ୟନ୍ତ ମୋଟରଟା ନିରାପଦ ଅଛି । ବ୍ୟାଟେରୀଟା ଖୋଲିଦେଲେ ମଧ୍ୟ ସେ ପ୍ଲେଟ୍‌ରେ ଯାହା ଏସିଡ୍ ଲାଗିଛି, ସେତିକ ଯଦି ବହିଯିବ, ତେବେ ବି ବିସ୍ଫୋରଣ ଘଟିବ ।

ଅନେକ ଚେଷ୍ଟା କରି ଷଷ୍ଠ ପେଚଟା ଖୋଲି ପକାଇଲି, ମାତ୍ର ଶେଷ ପେଚଟା ଖୋଲି ହେଲାନି । ଅସହାୟ ଭାବରେ ଦାଦାଙ୍କ ଆଡ଼କୁ ଚାହିଁଲି । ଦାଦା ତାଙ୍କ କାମ ଶେଷ କରି ମୋ କାମକୁ ଅପେକ୍ଷା କରିଥାନ୍ତି । ଘଣ୍ଟି ଶବ୍ଦ କ୍ରମଶଃ ବଢ଼ୁଥାଏ । ମୋ ଛାତି ଭିତରେ କିଏ ଯେମିତି ଗୋଟାଏ ହାତୁଡ଼ି ଧରି କ୍ରମାଗତ ପିଟି ଚାଲୁଥାଏ । ପଚାରିଲି—

—ଦାଦା, ଆଉ କେତେ ସମୟ ?

—ଆଉ କେତୋଟି ସେକେଣ୍ଡ ମାତ୍ର । ଦାଦା ପୂର୍ବପରି ଶାନ୍ତ ଓ ଅବିଚଳିତ । ସତେ ଯେମିତି ବିଶେଷ କିଛି ହୋଇନି ! ମୋର ମନେହେଲା, ଗୋଟାଏ ବିରାଟ ବିସ୍ଫୋରଣରେ ସମଗ୍ର ମହାଶୂନ୍ୟ ଧୂଳି ହୋଇ ମିଳେଇ ଯାଉଛି । ଏ ମୁହୂର୍ତ୍ତରେ ମୋ ହାତ ଅବଶ ହୋଇ ଆସିଲା । ମନେହେଲା, ମୋର ଚେତନା ଲୋପ ପାଇଯିବ । ମୁଁ ସମସ୍ତ ଶକ୍ତି ଦେଇ ଖୁବ୍ ଜୋର୍‌ରେ ପେଚକୁ ମୋଡ଼ିଦେଲି । କଟ୍ କରି ପେଚଟା ଖୋଲିଗଲା; ଘଣ୍ଟି ଶବ୍ଦ ଅନେକ ବଢ଼ିଗଲା । ଥର ଥର ହାତରେ ପ୍ଲେଟ୍‌କୁ ଖୋଲି

ବାହାର କରି ଆଣିଲ । ବିପଦ ଘଣ୍ଟି ମଧ୍ୟ ଧୀରେ ଧୀରେ ନୀରବ ହୋଇଗଲା । ଜୀବନ ଓ ମରଣର କଠୋର ସଂଗ୍ରାମରେ ଆମେ ଜିଣିଗଲୁ । ମାତ୍ର ମୋ ଦେହରୁ ଗୋଟେ ଝାଳ ବୋହିଗଲା । ଦେଖିଲ, ଏସିଡ୍ ପ୍ଲେଟ୍ ଉପରେ ବହି ଆସି ଶେଷ ମୁଣ୍ଡରେ ପହଞ୍ଚି ଯାଇଥିଲା । ଆଉ ସାମାନ୍ୟ ଟିକିଏ ଡେରି ହୋଇଥିଲେ ଆମେ ପୃଥିବୀରୁ ଶେଷ ପାଇ ଯାଇଥାନ୍ତୁ ।

ନୂଆ ଲୁହା ପ୍ଲେଟ୍‌ଟିଏ ଖଞ୍ଜି ସାରି ଦାଦା ଇଞ୍ଜିନ୍‌ର ଖୋପ ଭିତରୁ ବାହାରି ଆସିଲେ । ଏପର୍ଯ୍ୟନ୍ତ ବିପଦ ଘଣ୍ଟି ନୀରବ ହୋଇ ନ ଥାଏ । ଆମେ କିଛି ସମୟ ତାଙ୍କୁ ଚାହିଁ ରହିଲୁ । ବିପଦ ଘଣ୍ଟି ପୂରାପୂରି ବନ୍ଦ ହେବା ପରେ ଦାଦାଙ୍କ ନିର୍ଦ୍ଦେଶରେ ସେଥିରେ ନୂଆ ପେଚ କସି ଦେଲି । ବିପଦ ସଂପୂର୍ଣ୍ଣ କଟିଯିବା ପରେ ଦାଦା ଇଞ୍ଜିନ୍‌ଟାକୁ ଭଲ କରି ଦେଖିନେଲେ । ତାପରେ ଆମେ ଫେରିଲୁ । ସମସ୍ତେ ଆମକୁ ଅପେକ୍ଷା କରିଥିଲେ । ଦାଦା ଆଗ ନିରାପଦ ଘଣ୍ଟି ବଜାଇଲେ । ସମସ୍ତେ ସେ ମାଟିଘରୁ ବାହାରି ଆସିଲେ । ମତେ ବେଶ୍ ଭଲ ଲାଗିଲା । ମୁଁ ଯାଇ ନ ଥିଲେ ବୋଧହୁଏ ଦାଦା ଏକାକୀ ଇଞ୍ଜିନକୁ ମରାମତି କରିପାରି ନ ଥାନ୍ତେ । ମନେ ମନେ ଭଗବାନଙ୍କୁ ଧନ୍ୟବାଦ ଦେଲି । ଯାହାହେଉ, ଠିକ୍ ସମୟରେ ମତେ ପଠାଇ ଭଗବାନ ମଙ୍ଗଳ କରିଛନ୍ତି ।

## ମହାଶୂନ୍ୟରେ ଭୋଷ୍ଟକ୍

ଗୋଟାଏ ଦିନ ମାତ୍ର ରହିଲା । ଏଇ ରାତିଟା ପରେ ପୃଥିବୀପୃଷ୍ଠରୁ ବିଦାୟ ନେବୁ ଆମେ ଛଅ ଜଣ ଦୁଃସାହସୀ ଯାତ୍ରୀ । ଏ ବିଦାୟ ଶେଷ ବିଦାୟ କି ନୁହେଁ, ତାହା ତ ଆଗରୁ କହି

ହେବ ନାହିଁ । ଅନେକ କଥା ଭାବି ସେଦିନ ରାତିରେ ମତେ ଆଦୌ ନିଦ ହେଲାନି । ଭୋଷ୍ଟକ୍ ସମ୍ପୂର୍ଣ୍ଣ ପ୍ରସ୍ତୁତ ହୋଇ ଯାଇଥାଏ । ରାତି ପାହିଲେ ଦିନ ଠିକ୍ ବାରଟା ବେଳେ ଆମେ ମଂଗଳ ଗ୍ରହ ଅଭିମୁଖେ ଯାତ୍ରା ଆରମ୍ଭ କରିବୁ । ଶୋଇଲା ବେଳକୁ ରାତି ଦୁଇଟା । ଉଠିଲାବେଳକୁ ସକାଳ ସାତଟା । ଚଂଚଳ ନିତ୍ୟକର୍ମ ସାରିଦେଇ ଖାଇବା ଘରକୁ ବାହାରିଲି ଜଳଖିଆ କରିବାକୁ ।

ପୋପ୍‌ଭିର୍ ସେଠାରେ ଆଗରୁ ଆସି ଜଳଖିଆ କରୁଥିଲେ । ମୁଁ ପହଂଚିଲି । ମୁଁ କଟ୍ଲି ସିଝା ଅଣ୍ଡା ଓ କଫି ବରାଦ କରି ତାଂକ ପାଖରେ ବସିଲି । ଖାଉ ଖାଉ ଆମ ଭିତରେ ଗପସପ ଜମିଗଲା । ମୁଁ ପଚାରିଲି—

—ଆଚ୍ଛା ପ୍ରଫେସର୍, ଆମେ ମଂଗଳ ଗ୍ରହରେ କେତେବେଳେ ପହଂଚିବା ?

—ଆମ ଶୂନ୍ୟଯାନ ଘଣ୍ଟାକୁ ଦଶ ଲକ୍ଷ ମାଇଲ ବେଗରେ ଗଲେ ପାଞ୍ଚ କୋଟି ମାଇଲ ଯିବାକୁ ଖୁବ୍ ବେଶି ପଚାଶ ଘଣ୍ଟା ଲାଗିବ । ଅର୍ଥାତ୍ ଶୁକ୍ରବାର ଦିନ ବାରଟାବେଳେ ପୃଥିବୀରୁ ବାହାରିଲେ ଆମେ ରବିବାର ଦିନ ଠିକ୍ ଦୁଇଟା ବେଳେ ପହଂଚିବା; କିଂତୁ ମଜାର କଥା ହେଲା, ଆମ ପୃଥିବୀର ଲେନିନ୍‌ଗ୍ରାଡ୍‌ରେ ଦିନ ଦୁଇଟା ବେଳକୁ ମଂଗଳ ଗ୍ରହରେ, ଯେଉଁଠାରେ ଆମେ ଅବତରଣ କରିବା, ସେଠାରେ ସୂର୍ଯ୍ୟୋଦୟ ହୋଇଥିବ । ସେ ଉତ୍ତର ଦେଲେ । ମୁଁ ଖାଣ୍ଟିମତ୍ ଆଶ୍ଚର୍ଯ୍ୟ ହୋଇଗଲି । କହିଲି—

—କିନ୍ତୁ ଏମିତି କାହିଁକି ହେବ ? ମୁଁ ତ ଆଦୌ ବୁଝିପାରୁନି ଏ କଥା । ପ୍ରଫେସର୍ ବୁଝାଇ ଦେଲେ—

—ଦେଖ, ଦିନରାତି ସଂଭବ ହୁଏ ଗ୍ରହର ଆହ୍ନିକ ଗତି ହେତୁ । ଅର୍ଥାତ୍ ସୂର୍ଯ୍ୟର ଅବସ୍ଥିତି ତ ସ୍ଥିର । ତେଣୁ ସୂର୍ଯ୍ୟର ଅବସ୍ଥିତି ଆଉ ଗ୍ରହର ଆବର୍ତ୍ତମାନ ପୃଷ୍ଠଦେଶ, ଏମାନଙ୍କ ଉପରେ ହିଁ କେଉଁ ସ୍ଥାନରେ କେତେ ସମୟ ହେଲା ତାହା ନିର୍ଭର କରେ । ତୁମକୁ ଆଉ ଟିକିଏ ସରଳ ଭାବରେ ବୁଝାଇ ଦେଉଛି । ଗ୍ରହପୃଷ୍ଠର କୌଣସି ଏକ ନିର୍ଦ୍ଦିଷ୍ଟ ସ୍ଥାନ ଯେତେବେଳେ ଛାୟାମଣ୍ଡଳରେ ଥାଏ, ସେତେବେଳେ ସେଠାରେ ରାତି ହୋଇଥାଏ । ମାତ୍ର ଗ୍ରହର ଆହ୍ନିକ ଗତି ହେତୁ ସେଇ ନିର୍ଦ୍ଦିଷ୍ଟ ସ୍ଥାନଟି ଯେତେବେଳେ ଛାୟାମଣ୍ଡଳରୁ ଧୀରେ ଧୀରେ ଆଲୋକମଣ୍ଡଳରେ ପ୍ରବେଶ କରେ, ସେତେବେଳେ କ୍ରମଶଃ ସୂର୍ଯ୍ୟୋଦୟ ହୋଇ ସଂପୂର୍ଣ୍ଣ ଦିନ ହୁଏ । ସେହିପରି ସେହି ସ୍ଥାନଟି ପୁଣି ଯେତେବେଳେ ଆଲୋକମଣ୍ଡଳରୁ ଛାୟାମଣ୍ଡଳକୁ ପ୍ରବେଶ କରେ, ସେଠାରେ କ୍ରମଶଃ ସଂଧ୍ୟା ଓ ରାତି ହୁଏ । ଏତକ ବୁଝିଲ ତ ?

—ହଁ, ମୁଁ କହିଲି ।

—ବେଶ୍, ଆହ୍ନିକ ଗତିର ପରିକ୍ରମଣ ଗତି ତ ଅଛି । ତେଣୁ ଗ୍ରହପୃଷ୍ଠରେ ଏକ ନିର୍ଦ୍ଦିଷ୍ଟ ସ୍ଥାନ ଏମିତି ଆବର୍ତ୍ତନ କରୁ କରୁ ଗ୍ରହଟି ମହାଶୂନ୍ୟରେ ବି ସ୍ଥାନ ବଦଳାଉ ଥାଏ । ଲେନିନ୍‌ଗ୍ରାଡ୍‌ରେ ଯେତେବେଳେ ମୁଣ୍ଡ ଉପରେ ସୂର୍ଯ୍ୟ ଥିବ, ଆମେ ସେତିକବେଳେ ମଂଗଳ ଗ୍ରହରେ ଓହ୍ଲାଇ ପଡ଼ିବୁ । ମାତ୍ର ଆମେ ଯେଉଁଠାରେ ଓହ୍ଲାଇବୁ, ସେଇ ସ୍ଥାନଟି ମଂଗଳର ଛାୟାମଣ୍ଡଳରୁ ଠିକ୍ ଆଲୋକମଣ୍ଡଳକୁ ପ୍ରବେଶ କରୁଥିବ । ଏଣୁ ସେଠାରେ ସୂର୍ଯ୍ୟୋଦୟ ହେଉଥିବ । ମୁଁ ଟିକିଏ ଭାବି କହିଲି—

—ଆଚ୍ଛା ପ୍ରଫେସର୍, ଆପଣ ଏପରି ଗୋଟିଏ ସ୍ଥାନ କାହିଁକି ବାଛିଲେ ? ଅନ୍ତତଃ ଏମିତି ସ୍ଥାନଟିଏ ବାଛି ଥାଆନ୍ତେ, ଯେଉଁଠାରେ ଦିନ ନଅଟା ବା ଦଶଟା ହୋଇଥାନ୍ତା । ପ୍ରଫେସର୍ କହିଲେ—

—କିନ୍ତୁ ଲଭ ? ତା ଲାଗି ଗୋଟିଏ ଉପଯୁକ୍ତ ସ୍ଥାନ ବାଛିବାକୁ ତ ପଡ଼ିବ । ଯେଉଁଠି ସେଇଠି ଅବତରଣ କରିହେବ ନାହିଁ । ଆମେ ଦେଖିଲୁ, ଏଇଠି ଗୋଟିଏ ବିରାଟ ଡାମ ପଡ଼ିଆ ଅଛି । ଏଠାରେ ଓହ୍ଲାଇଲେ ବେଶ୍ ସୁବିଧା ହେବ । ଦିନଯାକ ମଂଗଳକୁ ପର୍ଯ୍ୟବେକ୍ଷଣ କରିବାକୁ ବି ସୁବିଧା ହେବ ।

ମୋ ମନରେ ଗୋଟିଏ ସନ୍ଦେହ ହେଲା । ପଚାରିଲି—

—ଆଚ୍ଛା, ଆମେ ମହାଶୂନ୍ୟରେ ଗଲାବେଳେ କ'ଣ ରାତି ହୋଇଥିବ ?

—ନା ନା, ଆଦୌ ନୁହେଁ; ମହାଶୂନ୍ୟରେ ତ ଚିରନ୍ତନ ଦିନ । ସେଠାରେ ଆଦୌ ରାତି ହୁଏନା । ତେବେ କଥାଟା ହେଲା, ଆମେ ଯେତେବେଳେ ମହାଶୂନ୍ୟରୁ ମଂଗଳ ଗ୍ରହର ଆଲୋକ-ଗ୍ରାସ୍ୟମଣ୍ଡଳରେ ପ୍ରବେଶ କରିବା, ସେତେବେଳେ ଟିକିଏ ଅଂଧାର ଭିତରେ ଯିବାକୁ ପଡ଼ିବ । ଆଲୋକମଣ୍ଡଳ ଓ ଗ୍ରାସ୍ୟମଣ୍ଡଳର ଠିକ୍ ମଝିରେ ଆମକୁ ଯିବାକୁ ପଡ଼ିବ । ତେଣୁ ପୂରା ଅଂଧାର ନ ଥିବ କି ପୂରା ଆଲୋକ ନ ଥିବ । ସେ କହିଲେ ।

—ତାହାହେଲେ ତ ଭାରି ମଜା ହେବ । ମହାଶୂନ୍ୟରେ ଦିନରୁ ବାହାରି ଆମେ ମଂଗଳ ଗ୍ରହରେ ସକାଳେ ପହଂଚିବା; ମଝିରେ ରାତିଟା ଆଉ ଦେଖିବା ନାହିଁ । ମୁଁ ଖୁସିରେ କହିଲି ।

ମୋ କଥା ଶୁଣି ପ୍ରଫେସର୍ ଟିକିଏ ହସିଲେ । ତା' ପରେ କହିଲେ—

—ହଁ, ମଂଗଳ ଗ୍ରହରେ ସୂର୍ଯ୍ୟୋଦୟଟା ଦେଖି ହେବ ।

ତା' ପରେ ପ୍ରଫେସର୍ ପୋପ୍‌ଭର୍ ମତେ କେତୋଟି ଯନ୍ତ୍ର ବିଷୟରେ ବୁଝାଇ ଦେଲ ପରେ ଆମେ ଅନ୍ୟ କାମରେ ବାହାରିଲୁ । ନିନାକୁ ଟିକିଏ ସାହାଯ୍ୟ କରିବାକୁ ମୁଁ ଗ୍ଲଲଗଲି । ପୂର୍ବଦିନ ରାତିରେ ଦାଦା ଟିକିଏ ଅସୁସ୍ଥ ହୋଇ ପଡ଼ିଥିଲେ, ମାତ୍ର ଏବେ ସଂପୂର୍ଣ୍ଣ ସୁସ୍ଥ ହୋଇଗଲେଣି ।

ଦିନ ଦଶଟା ସୁଦ୍ଧା ଆମେ ସମସ୍ତେ ପ୍ରସ୍ତୁତ ହୋଇଗଲୁ । ନିନା ପାଭ୍‌ଲୋଭ୍‌ନା ବି ଖୁବ୍ ବ୍ୟସ୍ତ ଥାଏ ହୋଷ୍ଟେଲ୍‌ରେ । କେଉଁଠି ଷ୍ଟୋଭ୍‌ଟା ରହିବ, କେଉଁଠି ବାସନ ରହିବ, କେଉଁଠି ପାଣିମାଠିଆ ରହିବ, ସେ ବ୍ୟବସ୍ଥା କରିବାରେ ସେ ବ୍ୟସ୍ତ । ଦାଦା, ପ୍ରଫେସର୍ ପୋପ୍‌ଭର୍ ଓ ସିତାଂଶୁ ଆଦି ରହସ୍ୟପୁରୀ ବୁଲି ବୁଲି ସମସ୍ତଙ୍କ ସହ ସାକ୍ଷାତ୍ କରୁଥାନ୍ତି । ଯାହା ସବୁ ଦରକାର, ସେଥିପାଇଁ କିଛି କିଛି ନିର୍ଦ୍ଦେଶ ଓ ଉପଦେଶ ଦେଇ ସମସ୍ତଙ୍କୁ ବୁଝାଉ ଥାଆନ୍ତି । ଅନେକ ଦିନର ଚେଷ୍ଟା ଓ ଅନେକ ଉଦ୍ୟମ ଫଳରେ ଆଜି ସ୍ୱପ୍ନ ସଫଳ ହେବାକୁ ଯାଉଛି । ଏଣୁ ଦାଦାଙ୍କ ମନରେ ଖୁବ୍ ଆନନ୍ଦ ଓ ଉତ୍ସାହ । ଏତେ ଟିକେ ବି ଦୁଃଖ ତାଙ୍କ ମନରେ ନ ଥିଲା । ସେ ପ୍ରତ୍ୟେକ କାମରେ ଯେମିତି ଉତ୍ସାହ ଓ ଧୈର୍ଯ୍ୟ ଦେଖାଉଥିଲେ, ଆଜି ବି ତାର ଅଭାବ ନ ଥିଲା । ପୃଥିବୀ ଛାଡ଼ିବାକୁ ସେ ଖୁବ୍ ବ୍ୟସ୍ତ ହୋଇ ପଡ଼ିଥିଲେ ଯେମିତି । ଦେଖିଲି ନିନା ଟିକିଏ ଚିନ୍ତାକୁଳ ଥିଲା । ପୃଥିବୀଟା ଛାଡ଼ିବାକୁ ବୋଧେ ତାର ଷୋଳଣା ଇଚ୍ଛା ନ ଥିଲା । ମୁଁ ଆଶ୍ଚର୍ଯ୍ୟ ହେଲି ନିନା ପାଭ୍‌ଲୋଭ୍‌ନାକୁ ଦେଖି । କି ଉତ୍ସାହରେ ସେ କାମ କରି ଯାଉଥାଏ ! ଗ୍ରହାନ୍ତରକୁ ଯିବାକୁ ତାର ଆଦୌ ମନ ଦୁଃଖ ନାହିଁ । ସେଥିପାଇଁ ଏତେ ଟିକିଏ ବି ଚିନ୍ତା କରୁ ନ ଥିଲା । ପଚ୍ଚରିଲେ କୁହେ—"ଆରେ, ତମେ ସବୁ ଯାଉଛ, ଆଉ ମୁଁ କାହିଁକି ରହିବ ?"

ସାଢ଼େ ଦଶ ବାଜିଲା । ରହସ୍ୟପୁରୀର ଘଣ୍ଟାଘଡ଼ି ଥରେ ଆଖି ବୁଲାଇ ଆଣିଲି । ଆମର ଏ ଅତି ପ୍ରିୟ ପୃଥିବୀଟା ଶେଷ ମୁହୂର୍ତ୍ତରେ ଖୁବ୍ ଭଲ ଲାଗିଲା । କିଏ ଜାଣେ ଆମେ ଆଉ ଜନ୍ମମାଟିକୁ ଫେରିବୁ କି ନାହିଁ ? ମାଟି ଉପରେ ଗଡ଼ିଯିବାକୁ ମନ ହେଲା । ଆଉ ଘଣ୍ଟାଏ ଭିତରେ ଆମେ ସ୍ପେସ୍ଶିପ୍‌ରେ ଚଢ଼ିବୁ । ରହସ୍ୟପୁରୀର ଗଛଲତା, ବଗିଚା ଆଜି ପର୍ଯ୍ୟନ୍ତ ମୋର ଦୃଷ୍ଟି ଆକର୍ଷଣ କରିପାରି ନ ଥିଲା, ମାତ୍ର ଆଜି ସବୁ ସୁନ୍ଦର ଦେଖାଗଲା । ବଗିଚାରେ ବୁଲି ଆସିଲି; ସ୍ପେସ୍ଶିପ୍ ଆଡ଼େ ଚାହିଁଲି । ଗୋଟାଏ ବିରାଟ ରକ୍ତମୁହାଁ ଦାନବ ଭଳି ଆକାଶକୁ ମୁଣ୍ଡ ଟେକି ଠିଆ ହୋଇଛି । ଦାଦା ଓ ଅନ୍ୟମାନେ ସ୍ପେସ୍ଶିପ୍‌ରେ ଚଢ଼ିଲେ । ଘଣ୍ଟାଘଡ଼ି ଆଖି ବୁଲାଇ ଦେଇ ସବୁ କିଛି ଠିକ୍ ଅଛି କି ନାହିଁ ଦେଖି ନେଲେ ।

କିଛି ସମୟ ପରେ ସମସ୍ତେ ସ୍ପେସ୍ଶିପ୍‌ରୁ ଓହ୍ଲାଇ ଆସିଲେ ଶେଷ ଥର ପାଇଁ ପୃଥିବୀର ସ୍ପର୍ଶ ପାଇବାକୁ । ଦାଦା ସହକାରୀ ଇଂଜିନିୟର ଆଲେକ୍‌ଜାଣ୍ଡର ଫେଡ଼େରେଭଙ୍କ ସହିତ ଶେଷ କଥାବାର୍ତ୍ତା କଲେ । ଆମେ ପୃଥିବୀ ଛାଡ଼ିବା ପରେ ସେ ତାର-ବାଡ଼ରେ ବିଦ୍ୟୁତ୍ ଚଳାଇବା ଆବଶ୍ୟକ ନାହିଁ । ଆମେ ଖୁବ୍ ବେଶି ହେଲେ ଦୁଇ ମାସ ଭିତରେ ଫେରିବା କଥା । ଏଣୁ ଫେରିବାବେଳକୁ ଆମ ଯାନ ପାଇଁ ଗୋଟିଏ ବିସ୍ତୃତ ସ୍ଥାନ ରହସ୍ୟ-ପୁରୀରେ ରହିଥିବା ଦରକାର । ଆମେ ଫେରିବାର ଶେଷ ମୁହୂର୍ତ୍ତ ପର୍ଯ୍ୟନ୍ତ ଠିକ୍ କରି ଦେଇଥାଉ । କାରଣ ମଙ୍ଗଳ ଗ୍ରହରୁ ପୃଥିବୀ ପର୍ଯ୍ୟବେକ୍ଷଣ କରିବା ସମ୍ଭବ ହେବ ନାହିଁ । ସାଢ଼େ ଏଗାର ବାଜିଲା । ଆମେ ସବୁ ସ୍ପେସ୍ଶିପ୍‌ରେ ଚଢ଼ିଲୁ । ରହସ୍ୟପୁରୀର ସବୁ ଲୋକ ଆସି ଠିଆ ହୋଇଥାଆନ୍ତି ଆମକୁ ବିଦାୟ ଦେବାକୁ ।

ସମସ୍ତଙ୍କଠାରୁ ବିଦାୟ ନେଇ ସ୍ପେସ୍ସିପ୍‌ରେ ପଶିଲୁ । ସମସ୍ତେ ପଶିଲା ପରେ ସିତାଂଶୁ କବାଟ ବନ୍ଦ କରିଦେଲେ ।

ସ୍ପେସ୍ସିପ୍‌ରେ ଦାଦା ଗୋଟିଏ ଖୁବ୍ ଶକ୍ତିଶାଳୀ ଓ ଆଧୁନିକ ରେଡିଓ-ଟେଲିଗ୍ରାଫ୍ ଖଂଜି ଥାଆନ୍ତି । ଏହା ସାହାଯ୍ୟରେ ମଧ୍ୟ ମଙ୍ଗଳ ଗ୍ରହରୁ ପୃଥିବୀକୁ କଥାବାର୍ତ୍ତା କରି ହେବ । ସବୁ ଯନ୍ତ୍ରପାତି ଠିକ୍ ଥାଏ । ଦାଦା ରେଡିଓ-ଟେଲିଗ୍ରାଫ୍ ଜରିଏ ଥିବା ଇଂଜିନିୟର-ମାନଙ୍କୁ ନିର୍ଦ୍ଦେଶ ଦେଲେ ସ୍ପେସ୍ସିପ୍‌କୁ ତା ମଞ୍ଚ ଉପରୁ ମୁକୁଳାଇବାକୁ । ଏଗାରଟା ପଞ୍ଚାବନରେ ଆମେ ସମସ୍ତେ ଅଣ୍ଟାରେ ବେଲ୍ଟ ଭିଡ଼ି ନିଜ ନିଜ ସ୍ଥାନରେ ବସିଲୁ । ସିତାଂଶୁ ଇଂଜିନ୍ ଚାଳକ । ଏଣୁ ସେ ଇଂଜିନ୍ ପାଖରେ ଥାଆନ୍ତି । ଦାଦା ଘଣ୍ଟାକୁ ଚାହିଁଲେ । ଏଗାରଟା ଅଠାବନରେ ମୋଟର ଚଳାଇ ଦିଆଗଲା । ଆଉ ଗୋଟାଏ ମିନିଟ୍ ପରେ ସ୍ପେସ୍ସିପ୍‌ର ଛଅଟିଯାକ ଇଂଜିନ୍ ଗର୍ଜି ଉଠିଲା । ଠିକ୍ ବାରଟାରେ ପୃଥିବୀକୁ ଗୋଟାଏ ପ୍ରଚଣ୍ଡ ଧକ୍କା ଦେଇ ସ୍ପେସ୍ସିପ୍ ମଙ୍ଗଳ ଗ୍ରହ ଅଭିମୁଖେ ଚାଲିଲା । ସାରା ଯାନଟା ଖୁବ୍ ଜୋର୍‌ରେ ଦୋହଲି ଉଠିଲା ।

ମୋର ଯେତେବେଳେ ଚେତନା ଫେରିଲା, ଦେଖିଲି ଦାଦା, ସିତାଂଶୁ ଓ ପୋପ୍ ଭିର୍ ବେଲ୍ଟ ଫିଟାଇ ଆମ ଆଡ଼କୁ ଆସୁଛନ୍ତି । ସ୍ପେସ୍ସିପ୍ ଭିତରଟା ଉଜ୍ଜ୍ୱଳ ବିଦ୍ୟୁତ୍ ଆଲୋକରେ ଉଦ୍‌ଭାସିତ । ମୁଁ ବେଲ୍ଟ ଫିଟାଇ ବାହାରକୁ ଆସିଲି । ମୁଣ୍ଡଟା ଟିକିଏ ବୁଲେଇ ଦେଉଥାଏ । ମାତ୍ର ବିଶେଷ କଷ୍ଟ ନୁହେଁ । ସ୍ପେସ୍ସିପ୍‌ର ଧକ୍କାଟା ମୋତେ ବିଶେଷ ଅସୁସ୍ଥ କରିନି । ସ୍ପେସ୍ସିପ୍‌ର ଗତି ଧୀରେ ଧୀରେ ବଢ଼ୁଥାଏ । କିଛି ସମୟ ପରେ ଯାନଟି ବାୟୁମଣ୍ଡଳ ଟପିଲା ଓ ଘଣ୍ଟାକୁ ଦଶ ଲକ୍ଷ ମାଇଲ ବେଗରେ ଛୁଟି ଚାଲିଲା । ଯାନର

ଧକ୍‌କାରେ ନିନା ଓ ରିନା ଟିକିଏ ଅସୁସ୍ଥ ହୋଇ ପଡ଼ିଥିଲେ, ମାତ୍ର କିଛି ସମୟ ପରେ ସୁସ୍ଥ ହୋଇଗଲେ । ଆମ ଯାନଟିରେ ତିନୋଟି କୋଠରୀ ଥାଏ । ପ୍ରଥମଟି ଗୋଟିଏ ବଡ଼ ହଲ୍ ଥିଲା ଓ ତା ପାଖରେ ଛୋଟ ଛୋଟ ଦୁଇଟା କୋଠରୀ । ବଡ଼ ହଲ୍‌ର ଗୋଟାଏ କାନ୍ଥରେ ଅନେକ ଯନ୍ତ୍ରପାତି ଥାଏ । ରାଡାର, ଅନେକ ପ୍ରକାର ତାପମାନ ଯନ୍ତ୍ର, ବାୟୁ ଚାପମାନ ଯନ୍ତ୍ର ଓ ଦୂରବୀକ୍ଷଣ ଆଦି ଖଞ୍ଜା ହୋଇଥାଏ । ପର୍ଯ୍ୟବେକ୍ଷଣ ଯନ୍ତ୍ରରୁ ବିଭିନ୍ନ ତଥ୍ୟ ଟିପି ରଖିବା କାମରେ ମୁଁ ଓ ରିନା ନିଯୁକ୍ତ ହୋଇଥିଲୁ । ଗୋଟିଏ ଚଉକିରେ ବସି ରାଡାର୍‌ର ପରଦାକୁ ଚାହିଁ ରହିଥିଲି । ପରଦା ଉପରେ ପ୍ରଥମେ ଗୋଟିଏ ଅସ୍ପଷ୍ଟ ଛବି ଦେଖାଗଲା ! ଛବିଟା ଆସ୍ତେ ଆସ୍ତେ ପରିଷ୍କାର ହୋଇ ଗୋଟିଏ ଫୁଟ୍‌ବଲ୍ ପରି ଦେଖାଗଲା । ମୁଁ ଖୁବ୍ ଉତ୍‌କଣ୍ଠାର ସହିତ ଚାହିଁ ରହିଥାଏ । ସମସ୍ତ ମଣିଷ ଜଗତର ପ୍ରଥମ ମଣିଷ ଯେ ମୁଁ, ପୃଥିବୀ ବାହାରୁ ପୃଥିବୀକୁ ଲକ୍ଷ୍ୟ କରୁଛି । ମୋର ଆନନ୍ଦର ଆଉ ସୀମା ନାହିଁ । ମନେ ମନେ ଦାଦାଙ୍କୁ ଓ ଅନ୍ୟମାନଙ୍କୁ କୃତଜ୍ଞତାରେ ପୋତି ପକାଇଲି । ସେମାନଙ୍କର ଅକ୍ଲାନ୍ତ ପରିଶ୍ରମ ଫଳରେ ସିନା ଆମେ ଆଜି ଗ୍ରହାନ୍ତର ଯାତ୍ରୀ ! ଏତିକିବେଳେ ରିନା ଆସି ମୋ ଚଉକି ପାଖରେ ବସି ରାଡାରକୁ ଲକ୍ଷ୍ୟ କଲା । କ୍ରମଶଃ ଫୁଟ୍‌ବଲ୍‌ଟି ନିଜ ଅକ୍ଷ ଚାରିପଟରେ ବୁଲିବା ଦେଖାଗଲା । ମୁଁ ଆନନ୍ଦରେ ଚିତ୍କାର କରିଉଠିଲି—

—ଆଃ ! କି ଚମତ୍କାର ! ଦେଖ ରିନା, ଆମେ ପୃଥିବୀର ପ୍ରଥମ ମଣିଷ, ଯିଏ ପୃଥିବୀ ଗୋଲ, ଆଉ ପୃଥିବୀ ନିଜ ଅକ୍ଷ ଚାରିପଟରେ ବୁଲିବାର ଦେଖି ପାରିଲୁ । ଅତି ଆନନ୍ଦରେ ମୁଁ କିଛି କହି ପାରିଲି ନାହିଁ । ରିନା ଖୁବ୍ ଖୁସିରେ କହିଲା—

—ଏଇ ଦେଖ ଶ୍ୟାମଳେନ୍ଦୁ, ଯେଉଁ ପୃଥିବୀ ଉପରେ ଏଇ କିଛି ସମୟ ପୂର୍ବରୁ ଆମେ ଚଲବୁଲ କରୁଥିଲେ, ସେ କେମିତି ଅସହାୟ ଭାବରେ ଆମ ପାଦ ତଳେ ଘୂରି ବୁଲୁଛି ! ରିନା ହସି ଉଠିଲା । ମୁଁ କହିଲି—

—କିନ୍ତୁ ତୁମଠୁ ତ ସେ କରୁଣା ଭିକ୍ଷା କରୁନି ! ଦୁହେଁଯାକ ହସିଉଠିଲୁ !

## ମହାଶୂନ୍ୟରେ ଭୂତ ନାଚ

ଠିକ୍ ଏତିକିବେଳେ ହଠାତ୍ ମୋ ଚଉକିଟା ଓଲଟି ପଡ଼ିଲା । ମୁଁ ଚଟ୍‌କିରି ରିନା ଚଉକିଟାକୁ ଧରି ପକାଇଲି, ମାତ୍ର ସେଇଟା ବି ରିନା ସହ ଓଲଟି ପଡ଼ିଲା ।

ହଠାତ୍ ଏ କ'ଣ ହେଲା ? ମୁଁ ବା ରିନା କେହି ତଳେ ନ ପଡ଼ି ଶୂନ୍ୟରେ ଭାସି ରହିଲୁ, ଠିକ୍ ଆରାମ ଚଉକିରେ ଶୋଇବା ପରି । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । କାହିଁ ? ମୁଁ କାହାକୁ ତ ଧରିନି । ଆରେ, ଏ ତ ଶୂନ୍ୟରେ ମ୍ୟାଜିକ୍ ! ରିନାକୁ ଚାହିଁଲି, ତା'ର ବି ଏହି ଦଶା । ହଲ୍‌ଚଲ୍ ହୋଇପାରୁନି ସେ । ମୁଁ ଉଠିବାକୁ ଚେଷ୍ଟା କଲି, ମାତ୍ର ଉଠି ପାରିଲି ନାହିଁ । ମତେ ଜଣାଗଲା, ଯେମିତି ମୋର ଆଦୌ ଓଜନ ନାହିଁ । ତୁଳା ମେଞ୍ଚାଏ ପରି ମୁଁ ଶୂନ୍ୟରେ ଭାସୁଛି । ରିନା ଚଉକିରୁ ଓହ୍ଲାଇ ପାରୁନି ବା ମୋ ଆଡ଼କୁ ଆସି ପାରୁନି । ଚଉକିଟା ଯେମିତି ଶୂନ୍ୟରେ ଝୁଲି ରହିଛି । କି ଆଶ୍ଚର୍ଯ୍ୟ !

ହଠାତ୍ ରିନାର ଚିତ୍କାରରେ ମୁଁ କଷ୍ଟେମଷ୍ଟେ, ମୁଣ୍ଡ ବୁଲାଇ ପଛକୁ ଚାହିଁଲି । ଯାହା ଦେଖିଲି, ମତେ ଖୁବ୍ ହସ ମାଡ଼ିଲା । ବଗ୍‌ଘି

ନନା ସୁରେଇରୁ ପାଣି ଆଣି କପି କରିବାକୁ ବସିଥିଲା । ହୁଏତ ତା ଗୋଡ଼ ଖସିଗଲା, ମାତ୍ର ସେ ତଳେ ପଡ଼ ନ ଯାଇ ଆମ ପରି ଝୁଲି ରହିଛି, ଠିକ୍ ଆରାମ ଚଉକିରେ ବସିଲା ପରି । ବେଶ୍ ଆରାମରେ ବସିଛି ନନା ଶୂନ୍ୟରେ । ଟେବୁଲ ଉପରୁ ସୁରେଇଟା ତଳମୁହାଁ ହୋଇ ଶୂନ୍ୟରେ ଝୁଲୁଛି । ମାତ୍ର ସେଥିରୁ ଟୋପେ ହେଲେ ପାଣି ଖସୁନି ! ଗୋଟାଏ ଦୁଇଟା ପ୍ଲେଟ୍ ମଧ୍ୟ ଟେବୁଲ ଉପରୁ ଖସିପଡ଼ି ଶୂନ୍ୟରେ ଭାସି ରହିଛି । ନନା ଭୟରେ ଚିତ୍କାର କରୁଥାଏ ।

ଏ ବିଚିତ୍ର ଭୌତିକ କାଣ୍ଡ ଦେଖି ଯେତିକି ହସ ମାଡ଼ିଲା ସେତିକି ଡର ମାଡ଼ିଲା । ଏ କି ଅଦ୍ଭୁତ ! ମଣିଷ ସହ ଜିନିଷପତ୍ରଗୁଡ଼ାକ ବି ଶୂନ୍ୟରେ ଝୁଲୁଛନ୍ତି ! ଦାଦା ଓ ପ୍ରଫେସର୍ ପୋପ୍‌ଭିଚ୍ ହସି ହସି ତାଂକ କୋଠରୀରୁ ବାହାରି ଆସିଲେ । ପାଦରେ ବୋଧହୁଏ ଲୁହା ଗୋବଦିଆ ଜୋତା ପିନ୍ଧିଥାନ୍ତି । କାରଣ ଷ୍ଟେସନ୍‌ର ଲୁହା ଚଟାଣରେ ସେଗୁଡ଼ାକ ଖୁବ୍ ଶବ୍ଦ ସୃଷ୍ଟି କରୁଥାଏ । ପାଖକୁ ଆସି ସେମାନେ ମତେ ଓ ନନାକୁ ଦୁଇହଳ ଜୋତା ପିନ୍ଧିବାକୁ ଦେଲେ । ଆମେ ତାକୁ ପିନ୍ଧିବା ସଂଗେ ସଂଗେ ଠିଆ ହେଲୁ । ମୁଁ ଦି' ପାହୁଣ୍ଡ ଚାଲିଗଲି । ଜୋତା ତଳେ ଖୁବ୍ ଶକ୍ତିଶାଳୀ ଚୁମ୍ବକ ଦିଆ ଯାଇଥାଏ । ତେଣୁ ଚାଲବୁଲ କରିବାରେ ଅସୁବିଧା ହେଉ ନ ଥାଏ । ଆମେ କେହି ସେଥିପାଇଁ ଚଂଚଳ ଚାଲି ପାରୁ ନ ଥିଲୁ । ରୋଷେଇଘରକୁ ଚାହିଁଲି, ନନା ସେମିତି ଶୂନ୍ୟରେ ଝୁଲି ଚିତ୍କାର କରୁଥାଏ । ଏତିକିବେଳେ ସିତାଂଶୁ ହସି ହସି ଇଂଜିନ୍ ପାଖରୁ ଆସି ଆମ ପାଖରେ ପହଂଚିଲେ । ତାଂକ ପାଦରେ ବି ସେଇ ଜୋତା । ମୁଁ ସେ ସବୁ କଥା କିଛି ବୁଝି ପାରୁ ନ ଥାଏ । ଦାଦା ଆଉ ହଳେ ଜୋତା ଧରିଥିଲେ । ମତେ କହିଲେ, "ଯା, ଆଗ ନନାକୁ ଦେଇ ଆ । ଏ ଭୂତ ନାଚ କଥା ବୁଝାଇ ଦେବି ।"

ଦାଦାଙ୍କ ପାଖରେ ମୁଁ, ରନା ଓ ବଗୁଲା ନନା ଠିଆ ହୋଇଥାଉ । ଦାଦା କହିଲେ, "ପୃଥିବୀପୃଷ୍ଠରେ ଆମେ ବୁଲବୁଲ କରିପାରୁ ଆମର ଓଜନ ଅଛି ବୋଲି । ମାତ୍ର ଆମର ଓଜନ ପୁଣି କ'ଣ ? ସେଇଟା ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ଛଡ଼ା କିଛି ନୁହେଁ । ପୃଥିବୀ ଆମକୁ ଟାଣି ରଖେ ବୋଲି ପୃଥିବୀର ପ୍ରଚଣ୍ଡ ଆବର୍ତ୍ତନରେ ବି ଆମେ ସବୁ ସ୍ଥିର ହୋଇ ରହିଛୁ, ଆଉ ମାଟି ଉପରେ ବୁଲବୁଲ କରିପାରୁଛୁ । ଆମେ ଯଦି ଏହି ମାଧ୍ୟାକର୍ଷଣ ଶକ୍ତି ନ ଥିବା ଗୋଟାଏ ଅଂଚଳରେ ପହଂଚିବା, ତେବେ ଆମର ଓଜନ କିଛି ରହିବ ନାହିଁ । କାରଣ ସେଇଠି ଆମକୁ କେହି ଟାଣି ରଖିବ ନାହିଁ । ତେଣୁ ସେଠି ଆମେ ବୁଲବୁଲ କରିବା ତ ଦୂରର କଥା, ସବୁବେଳେ ଗୋଟାଏ ଅବସ୍ଥାରେ ହିଁ ରହିବା । ପଡ଼ିଗଲେ ସେମିତି ଶୂନ୍ୟରେ ଝୁଲି ରହିବା । ସୁରେଇରୁ ପାଣି ତଳେ ଖସି ପଡ଼ିବ ନାହିଁ । ଯଦି କଷ୍ଟେମଷ୍ଟେ ପାଣି ବାହାରିଲା, ତେବେ ତାକୁ ଶୂନ୍ୟରେ ଛାଡ଼ିଦେଲେ ତଳେ ପଡ଼ିବନି, ସେମିତି ଭାସି ବୁଲିବ । ଟେବୁଲ ଉପରୁ ପେନସିଲ୍ ବା ପେନ୍ ଟିଏ ପଡ଼ିଗଲେ ତାହା ପଡ଼ି ଭାଙ୍ଗିଯିବାର ଭୟ ନାହିଁ । ଏବେ ଆମେ ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ଟପି ଆସିଲୁଣି । ଆମେ ବର୍ତ୍ତମାନ ଏମିତି ଅଂଚଳରେ ଉଡ଼ି ବୁଲୁଛୁ, ଯେଉଁଠି ପୃଥିବୀର କୌଣସି ଶକ୍ତି ଆମ ଉପରେ କାମ କରୁନାହିଁ । ବର୍ତ୍ତମାନ ଆମ ଜୋତା ତଳକରେ କାହିଁକି ଚୁମ୍ବକ ଲଗିଛି ବୁଝି ପାରୁଥିବ । ରକେଟ୍ର ଚଟାଣଟା ଲୁହା । ତେଣୁ ଲୁହା ଜୋତା ପିନ୍ଧିଲେ ଚୁମ୍ବକ ଆମକୁ ଟାଣି ରଖିବ ଓ ଆମେ ଚଲାବୁଲା କରିପାରିବୁ ।"

ଦାଦାଙ୍କର ଏ ବିଚିତ୍ର କାହାଣୀ ଶୁଣି ମତେ ଯେତିକି ଆଶ୍ଚର୍ଯ୍ୟ ଲାଗିଲା, ସେତିକି ମଜା ଲାଗିଲା । ମୁଁ ଯାଇ ସୁରେଇଟା ଟେକି

ଆଣିଲ, ମାତ୍ର ସୁରେଇଟାର କିଛି ଓଜନ ଥିଲା ପରି ଜଣାଗଲା ନାହିଁ । ତାକୁ ଖୁବ୍ ଜୋରରେ ଝାଡ଼ିଦେଲି । ସେଥିରୁ ଗୁଡ଼ାଏ ପାଣି ମେଞ୍ଚା ମେଞ୍ଚା ହୋଇ ବାହାରି ଆସିଲା ଓ ସେଗୁଡ଼ାକ ବରଫଖଣ୍ଡ ପରି ଭାସି ବୁଲିଲା । ତାକୁ ଫୁଙ୍କିଲି; ଶୂନ୍ୟରେ ସେଗୁଡ଼ାକ କିଛି ସମୟ ଭାସି ବୁଲିଲା । ଭାରି ମଜା ଲାଗିଲା । ପାଣିତକ ଫୁଙ୍କି ଫୁଙ୍କି ରିନା ପାଖକୁ ନେଇଗଲି । ଏ ଦୃଶ୍ୟ ଦେଖି ସେ ମୋ ଆଡ଼କୁ ଦୌଡ଼ି ଆସି ପାଣିତକ ପିଇଦେଲା । ଆମକୁ ଏତେ ଆଶ୍ଚର୍ଯ୍ୟ ଓ କୌତୁକ ଲାଗୁଥାଏ ଯେ ତାହା କହିବାର କଥା ନୁହେଁ ।

ରିନା ଅବାକ୍ ହୋଇ ଚାହିଁ ରହିଥାଏ । ଦାଦା, ପୋପ୍‌ଭର୍ ଆଉ ସିତାଂଶୁ ଆମ କାମ ଦେଖି ହସୁଥାନ୍ତି । ବହୁ କଷ୍ଟରେ କିଛି ବିସ୍କୁଟ୍ ଖାଇ ପାଣି ପିଇଲୁ । ଦାଦାଙ୍କ ନିର୍ଦ୍ଦେଶରେ ରିନା ଆଗରୁ କଫି କରି ଦୁଇଟା ଥର୍ମୋସ୍ ଫ୍ଲାସ୍କରେ ପୂରାଇ ରଖିଥିଲା । ସେଥିରୁ କପେ କପେ ଖୁବ୍ କଷ୍ଟରେ ପିଇଲୁ । ଦାଦାଙ୍କୁ ପଚାରିଲି—

—ଦାଦା, ଏ ଯାଦୁ ଖେଳ ଆଉ କେତେ ସମୟ ଚାଲିବ ?

ଦାଦା କହିଲେ—

—ଆମେ ମଂଗଳ ଛଡ଼ା ଅନ୍ୟ କେଉଁ ଗ୍ରହର ମାଧ୍ୟାକର୍ଷଣ ଶକ୍ତିର ସଂସ୍ପର୍ଶରେ ଆସିବା ନାହିଁ । ଏଣୁ ମଂଗଳ ଗ୍ରହର ମାଧ୍ୟାକର୍ଷଣ ଶକ୍ତି ଭିତରେ ପହଂଚିବା ପର୍ଯ୍ୟନ୍ତ ଏ ଅବସ୍ଥା ରହିଥିବ । ଏହି ସମୟ ଭିତରେ କିଛି ବୋଝେଇ କରିହେବ ନାହିଁ । ଅନ୍ତତଃ ରିନା କିଛି ସମୟ ବିଶ୍ରାମ ପାଇଗଲା । ରିନା କହିଲା—

—ଆଃ ! ସତେ ଯେମିତି ମତେ ଟିକିଏ ବିଶ୍ରାମ ଦେବାକୁ ତମେ ସବୁ ବଡ଼ ବ୍ୟସ୍ତ ହୋଇଥିଲ । ରିନା କଥା ଶୁଣି ସମସ୍ତେ ହସିଉଠିଲୁ ।

# ମହାଶୂନ୍ୟର ବିଭୀଷିକା

ଏତିକିବେଳେ ଯାଇ ମୁଁ ବୁଝିପାରିଲି ସ୍ପେସ୍ସିପ୍‌ରେ ଥିବା ଚଉକି, ଟେବୁଲ୍ ଓ ଖଟଗୋଡ଼ ତଳେ ଚୁମ୍ବକ କାହିଁକି ଲଗା ଯାଇଥିଲା । ଶୂନ୍ୟଯାନ ଭିତରେ ତ ସବୁବେଳେ ବିଦ୍ୟୁତ୍ ଆଲୁଅ ଜଳୁଥାଏ । ଯେତେବେଳେ ଇଚ୍ଛା ହୁଏ ଶୋଉ, ମାତ୍ର ସବୁବେଳେ ଯନ୍ତ୍ରପାତି ଜଗି ରହିବାକୁ ପଡ଼େ । ଅନ୍ତତଃ ରାଡାର ଉପରେ ଆଖି ରଖିବା ଦରକାର । ଏ ବିଶାଳ ମହାଶୂନ୍ୟ ଭିତରେ ସେ ଏକା ଆମର ସାହାଯ୍ୟକାରୀ । ସବୁ ପ୍ରକାର ବିପଦରୁ ଆମକୁ ସେ ଏକା ଅନେକ ପୂର୍ବରୁ ଅନ୍ତତଃ ସାବଧାନ କରିଦେଇ ପାରିବ । ପ୍ରଥମ ରାଡାରଟା ଭଲ କାମ ଦେଉ ନ ଥାଏ । ତେଣୁ ଦ୍ୱିତୀୟଟା କାମରେ ଲଗାଇଲୁ । ସେଇଟା ଖୁବ୍ ଶକ୍ତିଶାଳୀ ହୋଇଥିବାରୁ ମହାଶୂନ୍ୟ ଭିତରେ ଅନେକ ବାଟ ଲକ୍ଷ୍ୟ କରିବାକୁ ସହଜ ହେବ । ଆମେ ମହାଶୂନ୍ୟରେ ଏହା ଭିତରେ ତିରିଶ ଘଣ୍ଟା କଟେଇ ସାରିଲୁଣି ।

ରାଡାର ପାଖରେ ମୁଁ ବସିଥାଏ । ରାଡାରରେ କେବଳ ମହାଶୂନ୍ୟ ଛଡ଼ା ଆଉ କିଛି ଦେଖାଯାଉ ନ ଥାଏ । ହଠାତ୍ ପରଦାରେ ଗୁଡ଼ାଏ ବିଦ୍ୟୁତ୍ ଝଲକ ଦେଖାଗଲା ଓ ସେଗୁଡ଼ାକ ଅପସରି ନ ଯାଇ କ୍ରମାଗତ ଭାବରେ ଆସ୍ତେ ଆସ୍ତେ ଅଧିକ ଉଜ୍ଜ୍ୱଳ ହୋଇଉଠିଲା । ଆଖି ପୋଛି ପୁଣି ଚାହିଁଲି । ମୋ ଆଖିର ଭ୍ରମ ନୁହେଁ ତ ? ମାତ୍ର ନା, ମୋର ଭୁଲ ନୁହେଁ । ପରଦାରେ ସେଗୁଡ଼ାକ କ୍ରମଶଃ ବେଶି ଦେଖା ଯାଉଅଛି । ଉଜ୍ଜ୍ୱଳ ଆଲୋକରେ ଜଳବିନ୍ଦୁ ଯେମିତି ଚକ୍ ଚକ୍ ଦେଖାଯାଏ, ଏ ଝଲକଗୁଡ଼ିକ ସେମିତି ଦେଖା ଯାଉଥାଏ । ରିନାକୁ ଡାକିଲି । ଆମେ ସେମିତି ଚାହିଁ ରହିଲୁ, ମାତ୍ର ଏଗୁଡ଼ାକ ତ କୌଣସି ଗ୍ରହ ବା ତାରକା ନୁହେଁ.....।

ସେଗୁଡ଼ାକ କ୍ରମଶଃ ଆମ ଆଡ଼କୁ ମାଡ଼ି ଆସିବା ପରେ ଜଣା ଯାଉଥିଲା । ତା' ଛଡ଼ା ପ୍ରଫେସର୍ ପୋପ୍‌ଭର୍‌ଙ୍କ ଗଣନା ଅନୁସାରେ ଶୃରଠା ବେଳକୁ ଗାମା ତାରକା ରାଡର ପରଦା ଉପରେ ପଡ଼ିବା କଥା । ଏବେ ତ ମାତ୍ର ନଅଟା ସମୟ । ତେବେ ଏଗୁଡ଼ାକ କ'ଣ ? ରନା ସଙ୍ଗେ ସଙ୍ଗେ ଦାଦା ଓ ପୋପ୍‌ଭର୍‌ଙ୍କୁ ଡାକି ଆଣିଲା ।

ଖୁବ୍ ମନ ଦେଇ ଦାଦା ଓ ପ୍ରଫେସର୍ ପୋପ୍‌ଭର୍ କିଛି ସମୟ ସେ ଝଲକଗୁଡ଼ାକୁ ଲକ୍ଷ୍ୟ କଲେ । ସେଗୁଡ଼ାକ ଆହୁରି ପରିଷ୍କାର ହୋଇ ଉଠିଲେଣି । ବଡ଼ ଝଲକ ଦଳ ଆମ ଭୋଷ୍ଟକ୍ ଆଡ଼କୁ ମାଡ଼ି ଆସୁଛନ୍ତି । ପୋପ୍‌ଭର୍ ହଠାତ୍ ଆତଙ୍କରେ ପାଟିକରି ଉଠିଲେ—

—ଚନ୍ଦ୍ରଶେଖର, ଚନ୍ଦ୍ରଶେଖର, ଏଗୁଡ଼ାକ କୌଣସି ତାରକା ବା ଗ୍ରହ ନୁହଁନ୍ତି ବା ଗାମା ନକ୍ଷତ୍ର ବି ନୁହେଁ । ଖୁବ୍ ବେଗରେ ସେ ଆମ ଯାନ ଆଡ଼କୁ ମାଡ଼ି ଆସୁଛନ୍ତି ! ଏଗୁଡ଼ାକ ଖୁବ୍ ବଡ଼ ଗୋଟିଏ ଉଲ୍‌କା ଦଳ ଛଡ଼ା ଅନ୍ୟ କିଛି ନୁହେଁ । ଦାଦା ଏ କଥା ଶୁଣି ଚମକି ପଡ଼ିଲେ । କହିଲେ—

—ତାହାହେଲେ କ'ଣ କରାଯିବ ? ଆମ ଯାନ ଯେଉଁ ଗତିରେ ଚାଲିଛି ସେଥିରେ ଏ ଉଲ୍‌କା ଦଳ ସହିତ ନିଶ୍ଚୟ ସଂଘର୍ଷ ହେବ, ଆଉ ସଂଘର୍ଷ ହେଲେ ଆମେ ନିଶ୍ଚୟ ଧ୍ୱଂସ ପାଇଯିବା ।

—ତେବେ କ'ଣ ଉଦ୍ଧାର ପାଇବାର ଆଉ ଉପାୟ ନାହିଁ ?

ରନା ଖୁବ୍ ଭୟରେ ଚିତ୍କାର କଲା । ପ୍ରଫେସର୍ କହିଲେ—

—ରାଡର ପରଦା ଉପରୁ ଏମାନଙ୍କ ବିଷୟରେ ବିଶେଷ କିଛି ଜାଣି ହେଉ ନାହିଁ । ତେବେ ଏମାନେ ଆମଠାରୁ ପ୍ରାୟ ଲକ୍ଷ

ମାଇଲ ଦୂରରେ ତ ଅଛନ୍ତି । ଏଇ ବେଗରେ ଗଲେ ଆମେ ଆଉ ଦଶ ମିନିଟ୍ ଭିତରେ ତ ସିଧା ସେ ଦଳଟାରେ ଧକ୍କା ଖାଇଯିବା । ଓଃ ! ସେ ଉଲ୍କା ଦଳଟା କ ପ୍ରଚଣ୍ଡ ଗତିରେ ଆଗେଇ ଆସୁଛନ୍ତି !

—ତାହାହେଲେ ଉପାୟ ?

ମୁଁ ଆତଂକିତ ହୋଇପଡ଼ିଲି । ଦାଦା ପ୍ରଫେସର୍ ପୋପ୍‌ଭିଚ୍‌ଙ୍କୁ ଚାହିଁ କହିଲେ—

—ପୋପ୍‌ଭିଚ୍, ଯଦି ଆମେ ଯାନର ଗତି ହଠାତ୍ ବଢ଼େଇ ପାରନ୍ତେ, ତାହାହେଲେ ଅବା ଏ ଦଳଟାକୁ ଟପି ପାରନ୍ତେ । ପୃଥିବୀର ମାଧ୍ୟାକର୍ଷଣ ଶକ୍ତି ପାର ହେବା ପରେ ତ ଆମେ ପାଞ୍ଚଟା ଇଂଜିନ୍ ବନ୍ଦ କରିଦେଇଛୁ । ବର୍ତ୍ତମାନଠାରୁ ଯଦି ଛଅଟାଯାକ ଇଂଜିନ୍ ଚଳାଇ ଦିଆଯାଏ, ତେବେ ଯାଇ ରକ୍ଷା ମିଳିବ । ତେବେ ଆଗ ସିତାଂଶୁଙ୍କ ପରାମର୍ଶ ଦରକାର । ତାଙ୍କ ମୋଟରେ ଏତେ ବେଗରେ ଷ୍ଟେସନ୍‌କୁ ଆୟତ୍ତ କରି ରଖି ପାରିବ ତ ? କ'ଣ କହୁଛ ସିତାଂଶୁ ?

—ମାତ୍ର ଜାଳେଣି ? ଯେତିକି ଅଛି, ଛ'ଟାଯାକ ଇଂଜିନ୍ ଚାଲିଲେ ଅନେକ ଖର୍ଚ୍ଚ ହୋଇଯିବ ସେଥିରୁ । ମଂଗଳରୁ ଫେରିଲାବେଳକୁ ହୁଏତ ଆମେ ଭୟଂକର ବିପଦର ସମ୍ମୁଖୀନ ହୋଇପାରୁ । ସେ କହିଲେ ।

—ହଁ ହଁ, ତାହା ମୁଁ ଜାଣିଛି । ଛଅଟାଯାକ ଇଂଜିନ୍ ଚଳେଇଲେ ଆମ ସଞ୍ଚିତ ଜାଳେଣିରୁ ଅନେକ ଖର୍ଚ୍ଚ ହୋଇଯିବ । ଅନେକ ବିଦ୍ୟୁତ୍ ବ୍ୟାଟେରୀ ବି ସରିଯିବ; ମାତ୍ର ତା ନ କଲେ

ମଂଗଳ ଗ୍ରହରେ ପହଂଚିବା ପୂର୍ବରୁ ଆମେ ସବୁ ଏହି ମହାଶୂନ୍ୟରେ ହିଁ ଧ୍ୱଂସ ପାଇଯିବା । ଦାଦା କହିଲେ ।

—କିନ୍ତୁ···ସିତାଂଶୁ କ'ଣ କହିବାକୁ ବସିଥିଲେ; ପୋପ୍‌ଭିର୍ ହଠାତ୍ କହିଉଠିଲେ—

—ଆଃ ! ଯୁକ୍ତି କରନା ସିତାଂଶୁ, ରାଡ଼ରର ପରଦାରେ ଉଲ୍‌କାର ଗତି ଦେଖୁଛ ତ ? ଆଉ ମାତ୍ର ଦୁଇ ମିନିଟ୍ ରହିଲା ଧ୍ୱଂସ ପାଇବାକୁ ।

ସିତାଂଶୁ ଆଉ କିଛି ନ କହି ସୁଇଚ୍ ଟିପି ଛଅଟାଯାକ ଇଂଜିନ୍ ଚଳାଇ ଦେଲେ । ଭୋଷ୍ଟକ୍ ପ୍ରଚଣ୍ଡ ଗତିରେ ମହାଶୂନ୍ୟରେ ମାଡ଼ି ଚାଲିଲା । ଓଃ ! କି ଗତି ! ମଣିଷ କଳ୍ପନା ବାହାରେ ସେ । ଖୁବ୍ ଆତଂକ, ଆଶା ଓ ଉତ୍କଣ୍ଠାରେ ଚାହିଁ ରହିଲୁ । ମିନିଟ୍ ପରେ ମିନିଟ୍ କଟି ଯାଉଥାଏ । ରାଡ଼ରର ପରଦାରେ ଉଲ୍‌କାଗୁଡ଼ାକ ଆହୁରି ଉଜ୍ଜ୍ୱଳ ଦେଖାଗଲେ । ଠିକ୍ ପାଞ୍ଚ ମିନିଟ୍ ପରେ ଆମେ ଲକ୍ଷ୍ୟକଲୁ ଯେ ବିରାଟ ଉଲ୍‌କା ଦଳଟା ଭୋଷ୍ଟକ୍‌ର ଠିକ୍ ତଳେ ଟପି ଚାଲିଗଲେ । ତେବେ ବି କେତେ ସାନ ସାନ ଉଲ୍‌କା ଭୋଷ୍ଟକ୍‌ରେ ପିଟି ହୋଇ-ଗଲେ । ମାତ୍ର ସେଥିରେ ଆମ ଯାନର ବିଶେଷ କିଛି କ୍ଷତି ହେଲନାହିଁ । ବିପଦ କଟିଗଲା ପରେ ପାଞ୍ଚଟାଯାକ ଇଂଜିନ୍ ବନ୍ଦ କରିଦିଆଗଲା ।

ସମୟ ଗଡ଼ି ଚାଲିଛି । ଭୋଷ୍ଟକ୍ ବି ମଂଗଳ ଗ୍ରହ ଅଭିମୁଖରେ ଆଗେଇ ଚାଲିଛି । ପଇଁତିରିଶ ଘଣ୍ଟା ଗଲା, ଚାଳିଶ ଘଣ୍ଟା ଗଲା, ତଥାପି ରାଡ଼ରରେ ଗାମା ନକ୍ଷତ୍ରର ଦେଖା ନାହିଁ । ବୟାଳିଶ ଘଣ୍ଟା ପରେ ଗାମା ନକ୍ଷତ୍ରକୁ ଆମେ ରାଡ଼ରର ପରଦା ଉପରେ ଦେଖିଥାନ୍ତୁ । ଆଉ କିଛି ବିପଦ ପଡ଼ିଲା କି ? ମୁଁ ଓ ରେନା ଚାହିଁ ରହିଥାଉ ।

ସିତାଂଶୁ ଏତିକବେଳେ ଉଠି ଆସି ପଗ୍ଭରଲେ, "କ'ଣ ଗାମା ନକ୍ଷତ୍ର ଦେଖାଗଲାଣି ?"

—ନା, ତ; ମୁଁ କହିଲି ।

—କିନ୍ତୁ ସମୟ ତ ଗ୍ଭଲିଗଲାଣି । ବତିଶ ଘଣ୍ଟା ପରେ ଗାମା ଦେଖାଯିବା କଥା । ଏବେ ପ୍ରାୟ ଗ୍ଭଳିଶ ଘଣ୍ଟା ଗଲାଣି । ପୃଥିବୀଠାରୁ ଆମେ ଗ୍ଭରି କୋଟି ମାଇଲ ଗ୍ଭଲି ଆସିଲୁଣି । ତଥାପି 'ଗାମା'ର ଦେଖା ନାହିଁ ! ଓଃ !

ସିତାଂଶୁ ବ୍ୟସ୍ତ ହୋଇ ଚଉକି ଉପରେ ବସି ପଡ଼ିଲେ । ଖୁବ୍ ବିରକ୍ତ ହୋଇ କହିଲେ—

—ସେ ଦୁଇଟା ଲୋକ ଯେ କ'ଣ କରୁଛନ୍ତି, ମୁଁ ଜାଣି ପାରୁନାହିଁ । ଲଗି ଲଗି ସବୁ ଠିକ୍ କରି ସୁଦ୍ଧା ବାଟରେ ଭେଟିଲୁ ଦଳେ ଉଲ୍‌କା । ଏଥର ଯେ ସେମାନେ ମଂଗଳର ଦୂରତା ମାପିବାରେ ଭୁଲ କରି ନ ଥିବେ, କିଏ କହିବ ? ସିତାଂଶୁଙ୍କ ବନ୍ଧୁ ପ୍ରଫୁଲ୍ଲ ଦାଦା ତାଂକ ରୁମ୍‌ରୁ ଉଠିଆସି ସିତାଂଶୁଙ୍କ ପାଖରେ ପହଂଚିଲେ । କହିଲେ—

—କ'ଣ କହୁଛ ସିତାଂଶୁ ? ତୁମେ ବୋଧହୁଏ ପୋପ୍‌ଭର୍ ଆଉ ମୋ ଉପରେ ଖୁବ୍ ବିରକ୍ତ ନା ?

—ହଁ ହଁ, ତମେ ଦୁଇଜଣଯାକ ତ ସବୁ ହିସାବ କଲ, ସବୁ ଠିକ୍‌ଠାକ୍ କଲ; ଏତେ ଗୋଳମାଳ କାହିଁକି ? ବାଟରେ ଉଲ୍‌କା ଦଳ ଭେଟିଲୁ, ଏବେ ଗ୍ଭରି କୋଟି ମାଇଲ ଗଲା ପରେ ବି ଗାମାର ଦେଖା ନାହିଁ !

ଦାଦା ବୋଧହୁଏ ଟିକଏ ବିରକ୍ତ ହୋଇଗଲେ । ତେବେ ସୁଦ୍ଧା ସ୍ୱଭାବସୁଲଭ ଧୀର, ଶାନ୍ତ ସ୍ୱରରେ କହିଲେ—

—ସିତାଂଶୁ, ଏ ମଂଗଳ ଅଭିଯାନରେ ତୁମର ଖାଲି ସମାଲୋଚନା କରିବା ଛଡ଼ା ଆଉ କ'ଣ କିଛି କରିବାର ନାହିଁ ? ଜଣେ ଇଂଜିନିୟର ଭାବରେ ତମେ ତୁମ ଇଂଜିନ୍ କଥା ବୁଝ । ମହାଶୂନ୍ୟ ବିଷୟରେ ନ ଜାଣି ତୁମେ ସେଥିରେ ମୁଣ୍ଡ ପୂରାଉଛ କାହିଁକି ? ଆମେ ସବୁ କ'ଣ ଏସ କଥା ବୁଝୁନୁ ? ସିତାଂଶୁ ରାଗିଉଠି କହିଲେ—

—ସେ ବିଷୟରେ ତୁମେ ଚିନ୍ତା କରନା ଡକ୍‌ଟର୍ । ମୋ ଇଂଜିନ୍ ଠିକ୍ ଅଛି । ତୁମ ହିସାବ ଠିକ୍ ଥିଲେ ହେଲା ।

ଦାଦା ଏଥର ଟିକଏ ରାଗି ଉଠିଲେ ।

—ତୁମେ କହୁଛ ତାହାହେଲେ ଆମର ଗଣନା ସବୁ ଭୁଲ ?

—ଏଇ ଉଲ୍‌କା ଆକ୍ରମଣରେ ତ ତାହା ପ୍ରମାଣିତ ହୋଇ-ଯାଉଛି । ସିତାଂଶୁ କହିଲେ । ଦାଦା କିଛି ସମୟ ତାଂକ ମୁହଁକୁ ଚାହିଁ କହିଲେ—

—ସିତାଂଶୁ, କଲମ୍ବସ୍ ଯେତେବେଳେ ଭାରତକୁ ନୂଆ ଜଳପଥ ଆବିଷ୍କାର କରିବାକୁ ବାହାରିଲେ ଅନେକ ଲୋକ ବିରୋଧ କଲେ । ସହଯାତ୍ରୀମାନେ ତାଂକ ଉପରେ ବିଶ୍ୱାସ ରଖିଲେ ନାହିଁ । ଏମିତି ଅବସ୍ଥା ହେଲା, ସେମାନେ କଲମ୍ବସ୍‌କୁ ମାରି ସ୍ୱଦେଶକୁ ଫେରିଯିବାକୁ ବସିଲେ । ମାତ୍ର କଲମ୍ବସ୍ ଶେଷରେ ଗୋଟିଏ ନୂତନ ମହାଦେଶ ଆବିଷ୍କାର କଲେ । ମାନବ ଇତିହାସରେ ସେ ଲୋକ-ଗୁଡ଼ାକ ନିର୍ବୋଧ ବୋଲି ଆପଣାର ପରିଚୟ ଦେଇଗଲେ ସିନା !

—ତାହାହେଲେ ଡକ୍‌ଟର୍‌, ତୁମେ ମୋତେ ନିର୍ବୋଧ ବୋଲି କହୁଛ ?

ସିତାଂଶୁ ରାଗରେ ଥରିବାକୁ ଲାଗିଲେ । ଦାଦା କହିଲେ—

—ଆଃ ! ଏମିତି ରାଗୁଛ କାହିଁକି ସିତାଂଶୁ ? କଥାଟା ବୁଝ । ଶୁଣ, ଉଲ୍‌କାଗୁଡ଼ାକ ମହାଶୂନ୍ୟରେ ଏଣେତେଣେ ବୁଲୁଥାନ୍ତି । ସେମାନଙ୍କର କୌଣସି ନିର୍ଦ୍ଦିଷ୍ଟ ଗତିପଥ ନ ଥାଏ । ଏଣୁ ସେଗୁଡ଼ାକୁ ଗଣନା କରି ନିର୍ଣ୍ଣୟ କରିବା ଏକାବେଳକେ ଅସମ୍ଭବ । ଏ ହେଲା ପ୍ରଥମ ବିପଦ ସଂପର୍କରେ ମୋର କୈଫିୟତ୍‌ । ତା' ପରେ ମୋର ଗଣନା ଅନୁସାରେ ଗାମା ନକ୍ଷତ୍ର କାହିଁକି ଦେଖାଗଲା ନାହିଁ ଜାଣ ? ସେ ଉଲ୍‌କାଗୁଡ଼ାକଠାରୁ ରକ୍ଷା ପାଇବା ପାଇଁ ଆମେ ତ ଗତି ବଢ଼ାଇବାକୁ ବାଧ୍ୟ ହେଲୁ । ତେବେ ବି ଆମେ ଶ୍ରେଷ୍ଠ ଉଲ୍‌କାଙ୍କ ନିକଟରୁ ବର୍ତ୍ତି ପାରିଲୁ ନାହିଁ ! ତା' ଛଡ଼ା ଭେଷ୍ଟାକ୍‌ ନିଜର ଅକଳ୍ପନୀୟ ଗତି ଫଳରେ ଦିଗ ଠିକ୍‌ ରଖିପାରିଲା ନାହିଁ । ଫଳରେ ମହାଶୂନ୍ୟରେ ଭେଷ୍ଟାକ୍‌ ଦିଗଭ୍ରଷ୍ଟ ହୋଇଯାଇଛି । ଆମେ ଯଦି ମଙ୍ଗଳ ଗ୍ରହରେ ପହଂଚି ପାରିବା, ତେବେ ଭାଗ୍ୟ ଭଲ ! ନଚେତ୍‌ ମହାଶୂନ୍ୟରେ ଏମିତି ବୁଲି ବୁଲି ହଜିଯିବା ସବୁଦିନ ପାଇଁ ।

—ଏଁ…!! ମୁଁ ଏତେ ଗୁଡ଼ିଏ କଲି । ସତରେ ମୁଁ ଭୟରେ ଜଡ଼ ହୋଇ ଯାଇଥିଲି । ହାୟ ! ମହାଶୂନ୍ୟରେ ଲୀନ ହୋଇଯିବା ପାଇଁ ଆମେ କ'ଣ ପୃଥିବୀ ଛାଡ଼ିଥିଲୁ ? ରିନା ପାଟିରୁ ଆଉ କଥା ବାହାରିଲା ନାହିଁ । ସିତାଂଶୁ ବି ଅବାକ୍‌ ହୋଇ ଦାଦାଙ୍କ ମୁହଁକୁ ଚାହିଁ ରହିଥାନ୍ତି । କିଛି ସମୟ ପରେ ଦାଦା କହିଲେ—

—ନା, ବିଶେଷ ଭୟ କରିବାର କାରଣ ନାହିଁ । ଆମେ ଯଦି ଠିକ୍ ବୟାଳିଶ ଘଣ୍ଟା ପରେ ଅର୍ଥାତ୍ ଆଉ ପ୍ରାୟ ଘଣ୍ଟାଏ ସଇଁତିରିଶ ମିନଟ୍ ପରେ ଗାମା ନକ୍ଷତ୍ର ଦେଖି ନ ପାରିବା, ତେବେ ଆମେ ଆଉ ମଂଗଳ ଗ୍ରହରେ ପହଂଚ ପାରିବା ନାହିଁ ।

ଭୋଷ୍ଟକ୍‌ରେ ନୀରବତା ଖେଳିଗଲା । ଏଥର ସମସ୍ତଙ୍କ ମନରେ ହତାଶା । ସମସ୍ତେ ବାହାରକୁ ଚାହିଁ ରହିଥାଉ । ମାତ୍ର ବାହାରରେ ଅନନ୍ତ ମହାଶୂନ୍ୟ ଛଡ଼ା ଆଉ କିଛି ଦେଖାଯାଉ ନ ଥାଏ । ଯଦି ଆମେ ମଂଗଳ ଗ୍ରହରେ ପହଂଚ ନ ପାରୁ ତେବେ ଆମ ଅବସ୍ଥା କ'ଣ ହେବ ! ଆମେ ମହାଶୂନ୍ୟରେ କାହିଁ କୁଆଡ଼େ ଲୀନ ହୋଇଯିବୁ । ଆଉ ଉପାୟ ନାହିଁ ।

ମିନଟ୍ ମିନଟ୍ ହୋଇ ସମୟ କଟୁଥାଏ । ଗୋଟାଏ ମିନଟ୍ ଗୋଟାଏ ଯୁଗ ପରି ଲାଗୁଥାଏ । ଏଇ ଭୟଂକର ମୁହୂର୍ତ୍ତରେ ନନା ଶୋଇ ପଡ଼ିଛି । ଉଠିଲା ପରେ ହୁଏତ ଜାଣିବ ଆମେ ଆଉ ପୃଥିବୀକୁ ଫେରିଯାଇ ପାରିବୁ ନାହିଁ କିମ୍ବା ମଂଗଳରେ ପହଂଚ ପାରିବୁ ନାହିଁ । ଉଃ ! ମୁଁ ଆଉ ଚିନ୍ତା କରିପାରିଲି ନାହିଁ ।

ଘଣ୍ଟାଏ ଚାଲିଗଲା । ଆଉ ସଇଁତିରିଶ ମିନଟ୍ ପରେ ଆମ ଭାଗ୍ୟର ମୀମାଂସା ହୋଇଯିବ । ଜୀଇଁବୁ, ନଚେତ୍ ଶେଷରେ ଆମକୁ ହୀନ ମୃତ୍ୟୁହିଁ ବରଣ କରିବାକୁ ପଡ଼ିବ । କାହାରି ପାଟିରେ କଥା ନ ଥାଏ । ଦାଦା, ପୋପ୍‌ଭିଚ୍ ଖୁବ୍ ନୀରବ ଓ ଶାନ୍ତ ଥାଆନ୍ତି । ଆମେମାନେ ଉତ୍କଣ୍ଠାରେ ବାହାରକୁ ଚାହିଁଥାଉ । ଅଧଘଣ୍ଟାଏ ଚାଲିଗଲା । ମୋ ସ୍ନାୟୁଗୁଡ଼ାକ ଉଦ୍‌ବେଗ ଆଉ ଅଖଣ୍ଡ ଉତ୍ତେଜନାରେ ଅଧୀର ହୋଇଉଠିଲା । ଆଉ ଅଛି ପାଞ୍ଚ ମିନଟ୍ ବାକି । ଘଣ୍ଟାକୁ ଚାହୁଁଥାଏ, ଏଣେ ବାହାରକୁ ଚାହୁଁଥାଏ; ଆଉ ତିନି ମିନଟ୍ ।

ରାଡର ପରଦାରେ କଣ୍ଟି ଗୋଟାଏ ଅସ୍ପଷ୍ଟ ହୋଇ ଦେଖାଗଲା ପରି ବୋଧ ହେଲା । ଯନ୍ତ୍ର ପାଖକୁ ଉହୁଙ୍କି ପଡ଼ିଲି । ଧୀରେ ଧୀରେ ଗୋଟାଏ ନକ୍ଷତ୍ର ପରିଷ୍କାର ହୋଇଆସିଲା । ପୋପ୍‌ଭର୍ ଆନନ୍ଦରେ ପାଟିକରି ଉଠିଲେ—"ଗାମା ! ଗାମା ! ଏଥର ଆମେ ମଂଗଳରେ ନିଶ୍ଚୟ ପହଂଚିବା । ସେହି ଉଲ୍‌କା ଯୋଗୁ ଆମେ କୋଟିଏ ମାଇଲ ବଣା ହୋଇଗଲୁ । ଏଥର ଆଉ କିଛି ଚିନ୍ତା ନାହିଁ ।"

ଦାଦାଂକୁ ଚାହିଁଲି । ସେମିତି ଅବିଚଳିତ ଭାବେ ସେ ଟିକେ ଟିକେ ହସୁଥାନ୍ତି । ସିତାଂଶୁ ଦାଦାଂଙ୍କ ମୁହଁକୁ ଚାହିଁ ଅପରାଧୀ ପରି ଉଠି ଚାଲିଗଲେ ତାଂଙ୍କ ଇଂଜିନ୍ ପାଖକୁ । ଆମେ ଶାନ୍ତିରେ ନିଃଶ୍ୱାସ ମାରିଲୁ । ଦାଦାଙ୍କ ଗଣନା ପାଖରେ ମୁଣ୍ଡ ନୁଆଁଇଲି । ବାଃ ! କି ନିର୍ଭୁଲ ତାଂକର ଗଣନା ! ପୋପ୍‌ଭର୍ କହିଲେ—

—କିନ୍ତୁ ଚନ୍ଦ୍ରଶେଖର, ମୋର ସନ୍ଦେହ ହେଉଛି ଆମେ ମଂଗଳପୃଷ୍ଠରେ ପୂର୍ବନିର୍ଦ୍ଧାରିତ ସ୍ଥାନ ଓ ସମୟରେ ପହଂଚି ପାରିବା ନାହିଁ । ସେଠାରେ ପହଂଚିଲାବେଳକୁ ହୁଏତ ମଧ୍ୟାହ୍ନ ହୋଇଯାଇଥିବ ।

—ହଁ, ଅସମ୍ଭବ ନୁହେଁ । ଦାଦା ମତ ଦେଲେ ।

## ମଙ୍ଗଳ ଗ୍ରହରେ ଓହ୍ଲାଇଲୁ

ସମୟ ଗଡ଼ି ଚାଲିଛି । ନିର୍ଦ୍ଧାରିତ ସମୟରୁ ପଚିଶ ଘଣ୍ଟା ଅତିକ୍ରାନ୍ତ ହୋଇଗଲାଣି । କେତେବେଳେ ପହଂଚିବୁ ତାହା ଠିକ୍ ନାହିଁ । ତେବେ ଆମେ ନିଶ୍ଚୟ ମଂଗଳରେ ପହଂଚିବୁ—ଏ ବିଶ୍ୱାସ ଥାଏ । ଏତିକିବେଳେ ଦାଦା ଆସି କହିଲେ, "ଆମେ ମଂଗଳରେ ପହଞ୍ଚିବା ପ୍ରାୟ ତିନି ଘଣ୍ଟା ଭିତରେ ।"

—ହେ ବାବୁମାନେ, କପେ କପେ କଫି ଚଳିବ ? ରେଟେରେଇ-ଙ୍କରୁ ନିନା ପାଚି କଲା ।

ଆମେ ସମ୍ମତି ଦେଲୁ । କିଛି ବିସ୍କୁଟ ଓ କଫି ନେଇ ନିନା ଆସିଲା । ଭାରି ମଜା ବୁଢ଼ୀଟାଏ । ମହାକାଶରେ ଉଡ଼ି ଚାଲିଛୁ ଗୋଟାଏ ଅଜଣା ଦେଶକୁ । ତଥାପି ତାର ଟିକିଏ ବି ଚିନ୍ତା ନାହିଁ । ଯିଏ ଭିତରେ ଏତେ କଥା ଘଟିଗଲାଣି, ସିଏ କିଛି ଜାଣେନା ବା ଜାଣିବାକୁ ଆଗ୍ରହ ବି କରେନାହିଁ । ଏତେ ବିପଦ ଭିତରେ ଯାଇ ମଧ୍ୟ ଗୋଟାଏ ନୂଆ ଗ୍ରହ ଦେଖିବାର ପ୍ରବଳ ଆଗ୍ରହ ଉଙ୍କି ମାରିଲା । ଆଉ ଦୁଇ ଘଣ୍ଟା ଥାଏ ।

ଦାଦା ସିତାଂଶୁକୁ ଯାନର ଗତି କମାଇ ଦେବାକୁ ନିର୍ଦ୍ଦେଶ ଦେଲେ । ରେକେଟ୍‌ର ଗତି କମାଇ ଘଣ୍ଟାକୁ ପ୍ରାୟ ଲକ୍ଷେ ମାଇଲ ବେଗରେ ଉଡ଼ି ଚାଲିଲା । ସମୟ ସାଢ଼େ ଆଠଟା । ଲେନିନ୍‌ଗ୍ରାଡ୍‌ରେ ଏତେବେଳକୁ ପ୍ରାୟ ସନ୍ଧ୍ୟା ହୋଇ ଆସିବଣି । ରିନା ଓ ମୁଁ ଆମ କାମ ଛାଡ଼ିଦେଇ ବସିଗଲୁ । ସିତାଂଶୁ ଆମ ପାଖରେ ଆସି ପହଂଚିଲେ । ଦାଦା ଓ ପୋପଭିଚ୍ ବି ଆସିଲେ । ଦାଦା କହିଲେ—

—ଦେଖ, ତୁମମାନଙ୍କୁ କେତୋଟି କଥା କହିବାର ଅଛି । ଆମ ଯାତ୍ରା ସରି ଆସିଲାଣି । ଆଉ ଘଂଟାକ ଭିତରେ ଆମେ ମଂଗଳରେ ଅବତରଣ କରିବା ।

—ହଁ, ସେତିକ ତ ଆମେ ଆଶା କରୁଛୁ ; ସିତାଂଶୁ କହିଲେ ।

—ଖାଲି ଆଶା କାହିଁକି ସିତାଂଶୁ, ଇଂଜିନ୍ ଯଦି ଠିକ୍ କାମ କରେ, ତେବେ ଏ କଥା ନିଶ୍ଚିତ ।

—ମୋ ଇଂଜିନ୍ ଠିକ୍ ଅଛି । ତୁମେ ଯେତେବେଳେ କହିବ ସେତେବେଳେ ବନ୍ଦ କରିଦେବି । ଏବେ ରେକେଟ୍‌ର ଗତି ତ ଆହୁରି କମି ଗଲାଣି । ଘଣ୍ଟାକୁ ପାଞ୍ଚ ହଜାର ମାଇଲ ବେଗରେ ଯାଉଛି ।

ଆଉ ଅଧଘଣ୍ଟାଏ ପରେ ଇଂଜିନ୍ ପୁରାପୁରି ବନ୍ଦ କରିଦେବା ଦରକାର । ଦାଦା କହିଲେ ।

—ହଁ, ମୋଟରଟା ଅବଶ୍ୟ ଚାଲୁଛି, ମାତ୍ର ସେଇଟାକୁ ବନ୍ଦ କରିଦେଲେ ଇଂଜିନ୍ ବି ବନ୍ଦ ହୋଇଯିବ ।

—ହଉ, ଭଲ କଥା । ହଁ, ଗୋଟାଏ କଥା—ଆମେ ମଂଗଳ ଗ୍ରହର ବାୟୁମଣ୍ଡଳରେ ପହଂଚିବା ସଂଗେ ସଂଗେ ମୁଁ ଏଇ ସୁଇଚ୍‌ଟା ଚିପିଦେବି । ରେକେଟ୍ ପଛରେ ଗୋଟିଏ ବିରାଟ ଇସ୍ପାତ୍ର ଛତା ଖୋଲିଯିବ । ଶ୍ୟାମଳେନ୍ଦୁ ! ରିନା ! ତୁମେ ସବୁ ବେଲ୍‌ଟ ବାନ୍ଧି ପକାଇବ । ଇସ୍ପାତ୍ର ଛତାରେ ଯେତେବେଳେ ପବନ ଧରିବ, ସେତିକିବେଳେ ମୋଟର ଓ ଇଂଜିନ୍ ବନ୍ଦ କରିଦିଆଯିବ । ରେକେଟ୍ ଯାଇ ମଂଗଳ ଉପରେ ଧୀରେ ଓହ୍ଲାଇବ ।

ଏତିକିବେଳେ ପୋପ୍‌ଭର୍ ତାଂକ ରୁମ୍‌ରୁ ଡାକିଲେ—

—ଚନ୍ଦ୍ରଶେଖର ! ଚନ୍ଦ୍ରଶେଖର ! ଏଇ ଦେଖ ତ······

ଦାଦା ସଂଗେ ସଂଗେ ଚାଲିଗଲେ । ଆମେ ବି ତାଂକ ପଛେ ପଛେ ସେଠାକୁ ବାହାରିଲୁ । ପୋପ୍‌ଭର୍ ଦାଦାଂକ ହାତକୁ ଦୂରବୀକ୍ଷଣ ଯନ୍ତ୍ର ଦେଇ ରେକେଟ୍‌ର ପର୍ଯ୍ୟବେକ୍ଷଣ ଝରକା ବାଟେ ଚାହିଁବାକୁ କହିଲେ । କିଛି ସମୟ ପରେ ଦାଦା ଦୂରବୀକ୍ଷଣ ଯନ୍ତ୍ରରୁ ଆଖି କାଢ଼ି ଆଣିଲେ ଏବଂ ପୋପ୍‌ଭର୍‌ଙ୍କ ଆଡ଼କୁ ଚାହିଁ କହିଲେ—

—ଆମେ ମଂଗଳରେ ଓହ୍ଲାଇବାକୁ ଯେଉଁ ଘାସ ପଡ଼ିଆ ବାଛୁଥିଲୁ ତା' କାହିଁ ? ଆମେ ଯେଉଁଠି ଓହ୍ଲାଇବୁ ସେଇଠି ତ ଖାଲି ସାନ ସାନ ପାହାଡ଼ ଦେଖାଯାଉ ଅଛି ।

ସିତାଂଶୁ ସଂଗେ ସଂଗେ ଦୂରବୀକ୍ଷଣ ଯନ୍ତ୍ରରେ ଆଖି ଦେଇ ଗୁହାଁଲେ । ମୁଁ ମନେ ମନେ ପ୍ରମାଦ ଗଣିଲି । ଏଥର ଆଉ ରକ୍ଷା ନାହିଁ । ଯଦି ରୋକେଟ୍ କେଉଁ ହ୍ରଦ ବା ନଦୀରେ ପଡ଼େ, ତେବେ ମହାଶୂନ୍ୟ ଯାଇ କାନ୍ତାରରେ ପଡ଼ିବା ହିଁ ସାର ହେବ ।

ବାଟରେ ଏତେ ବିପଦରୁ ଉଦ୍ଧାର ପାଇ ଯଦି ଶେଷକୁ ମଂଗଳ ଗ୍ରହପୃଷ୍ଠରେ ଶେଷ ନିଃଶ୍ୱାସ ଛାଡ଼ିବାକୁ ପଡ଼ିବ, ତେବେ ଏହାଠାରୁ ବଳି ଆଉ ଅଧିକ ଦୁଃଖଦାୟକ ଘଟଣା କ'ଣ ଥାଇପାରେ ?

ଦାଦା ଉଠି ଆସିଲେ । ଯାହା ହେବ ହେଉ, ବରଂ ଧୀରେ ସୁସ୍ଥେ ଓହ୍ଲାଇ ପଡ଼ିଲେ ରକ୍ଷା । ସିତାଂଶୁ ଇଂଜିନ୍ ପାଖକୁ ଗ୍ଲଲିଗଲେ । ଦାଦା ରୋକେଟ୍‌ର ଗତି ନିୟନ୍ତ୍ରଣ କରିବାକୁ ତତ୍ପର ହୋଇଉଠିଲେ । ଆମେ ଅଣ୍ଟାରେ ବେଲ୍ଟ ଭିଡ଼ି ବସିଗଲୁ । ସିତାଂଶୁ ବେଲ୍ଟ ଭିଡ଼ି ଇଂଜିନ୍ ପାଖରେ ବସିଥାନ୍ତି । ଦାଦାଙ୍କ ନିର୍ଦ୍ଦେଶ ପାଇବା ସଂଗେ ସଂଗେ ସେ ମୋଟରଟି ବନ୍ଦ କରିଦେବେ । ଦାଦା ତାଂକ ନିୟନ୍ତ୍ରଣ ଆସନରୁ ଉଠି ପାଟିକଲେ, "କ'ଣ ସମସ୍ତେ ଠିକ୍‌ଠାକ୍ ହୋଇଗଲ ତ ? ଏଥର ମୁଁ ଇସ୍ପାତ ଛତା ଖୋଲିଲି । ହାତରେ ଯାହା ପଡ଼ୁଛି ତାକୁ ଧରି ବସ ।" ଦାଦା ସୁଇଚ୍ ଟିପିଲେ । ରୋକେଟ୍ ଯେଉଁ ବେଗରେ ଆସୁଥିଲା, ଛତାଟା ହଠାତ୍ ଖୋଲିଯିବାରୁ ପ୍ରବଳ ଭାବରେ ଦୋହଲି ଉଠିଲା । ତାପରେ ସ୍ଥିର ହୋଇଗଲା । ଛତା ଖୋଲିଯିବାରୁ ସିତାଂଶୁ ବେଲ୍ଟ ଖୋଲି ଇଂଜିନ୍ ପାଖରେ

ଆଣେଇ ପଡ଼ିଲେ । ହାତରେ ଇଂଜିନ୍ ନିୟନ୍ତ୍ରଣ ଦଣ୍ଡଟା ଧରି ଠିକ୍ ହୋଇ ରହିଲେ । ଦାଦା କହିଲାମାତ୍ରେ ଇଂଜିନ୍‌କୁ ବନ୍ଦ କରିଦେବେ । ଦାଦା ମୋଟରର ବନ୍ଦ କରିବାକୁ ନିର୍ଦ୍ଦେଶ ଦେଲେ । ଷ୍ପେଷ୍ଟଲ୍ ମଂଗଳର ବାୟୁମଣ୍ଡଳରେ ଅସ୍ଥିର ହୋଇ ଆଗେଇ ଯାଉଥାଏ । ସିତାଂଶୁ ନିୟନ୍ତ୍ରଣ ଦଣ୍ଡଟା ଧରି ଟାଣିଲେ । ଦାଦା ପାଟି କଲେ—

—ଆମେ ମଂଗଳର ପାଞ୍ଚ ଶହ ମାଇଲ ଉପରେ ଅଛୁ । ଆଉ ଦଶ ମିନିଟ୍ ଭିତରେ ମଂଗଳପୃଷ୍ଠରେ ଓହ୍ଲେଇପଡ଼ିବା । ସିତାଂଶୁ, ଖୁବ୍ ଶୀଘ୍ର ଇଂଜିନ୍ ବନ୍ଦ କର ।

ସିତାଂଶୁ ପ୍ରାଣପଣେ ଦଣ୍ଡଟାକୁ ଟାଣୁଥାନ୍ତି, ମାତ୍ର କେଉଁଠି ଅଟକିଯାଇ ସେଇଟା ଆଦୌ କାମ କଲାନି । ଇଂଜିନ୍ ଓ ମୋଟର ଚାଲିଥାଏ । ସିତାଂଶୁ ଖୁବ୍ ବଳ ପ୍ରୟୋଗ କରି ଟାଣିଲେ, ମାତ୍ର ସବୁ ବୃଥା ହେଲା । ଆଶଂକାରେ ମୋ ଛାତି ଭିତରଟା ଥରିଉଠିଲା । ମଂଗଳ ଗ୍ରହରେ ଓହ୍ଲାଇବା ପରିବର୍ତ୍ତେ ଆମେ ପେଶି ହୋଇଯିବା ନାହିଁ ତ ? ଦାଦା ପୁଣି ପାଟି କଲେ, "ସିତାଂଶୁ, ମୋଟର..."

ସିତାଂଶୁ ନିରୁପାୟ । ତାଂକ ମୁହଁଟା ଭୟ ଓ ହତାଶାରେ ଶେତା ପଡ଼ିଗଲାଣି । ସେ ପାରୁ ପର୍ଯ୍ୟନ୍ତ ଚେଷ୍ଟା କରି ମୋଟରଟା ବନ୍ଦ କରିବାକୁ ପୁଣି ଉଦ୍ୟମ କଲେ । ମାତ୍ର ମୋଟର ବା ଇଂଜିନ୍ ଆଦୌ ବନ୍ଦ ହେଲା ନାହିଁ । ସିତାଂଶୁ ହତାଶ ହୋଇ କହିଲେ, "ଡକ୍ଟର୍, ନିୟନ୍ତ୍ରଣ ଦଣ୍ଡ କାମ କରୁନି, କେଉଁଠି ଅଟକି ଯାଇଛି; ମୋଟର ବା ଇଂଜିନ୍ ବନ୍ଦ ହେବାର ଆଉ ଉପାୟ ନାହିଁ ।"

ଏ କଥା ଶୁଣି ଆମେ ସମସ୍ତେ କାଠ ହୋଇଗଲୁ । ମୁଁ ସ୍ଥିର ଭାବରେ ଜାଣିନେଲି ଆଉ ଉଦ୍ଧାର ନାହିଁ । ତଳେ ପିଟିହୋଇ

ଷ୍ଟେସନ୍ ଶେଷ ହୋଇଯିବ, ଆଉ ତା' ସହିତ ଏଇ କେତେଜଣ ଅସହାୟ ଯାତ୍ରୀ ମଧ୍ୟ । ଦାଦା ବି ହତାଶ ହୋଇପଡ଼ିଲେ ।

ଏଇ ପ୍ରଥମ ଥର ପାଇଁ ମୁଁ ତାଙ୍କଠାରେ ହତାଶା ଦେଖିଲି । କହିଲେ, "ସିତାଂଶୁ, କ'ଣ ହେଲା ମୋଟରର ? ବର୍ତ୍ତମାନ ଆଉ କ'ଣ କରିବା ?" ସିତାଂଶୁ ଅସହାୟ ଭାବରେ ଦାଦାଙ୍କ ମୁହଁକୁ ଚାହିଁ ରହିଥାନ୍ତି । ମଣିଷ ଯନ୍ତ୍ର ତିଆରି କରେ, କିନ୍ତୁ ଠିକ୍ ସମୟରେ ଯଦି ଯନ୍ତ୍ର କାମ ନ କରେ ତେବେ ମଣିଷର ଆଉ ଉପାୟ କ'ଣ ? ସିତାଂଶୁ ବୋଧହୁଏ ଭଗବାନଙ୍କୁ କ୍ଷମା ମାଗୁଥିଲେ, ଆଉ ଦାଦାଙ୍କ ପାଖରେ ମନେ ମନେ ଖୁବ୍ ଅନୁତାପ କରୁଥିଲେ ତାଙ୍କ ପୂର୍ବ ବ୍ୟବହାର ପାଇଁ । ଷ୍ଟେସନ୍ ଆଗେଇ ଚାଲିଛି !!

ଏ ବିପଦରେ ଦାଦା ଧୀରସ୍ଥିର ହୋଇଗଲେ । ସେ ଦେଖିଲେ ସମସ୍ତଙ୍କର ଆଶା ଓ ଭରସାର ଏକମାତ୍ର ସ୍ଥଳ ସେ ନିଜେ । ଏ ଅବସ୍ଥାରେ ଯଦି ସେ ସାହସ ଓ ଧୈର୍ଯ୍ୟ ହରାଇବେ, ତେବେ ଅନ୍ୟମାନେ ସମସ୍ତେ ଭାଙ୍ଗି ପଡ଼ିବେ । ସେ ଧୀର ସ୍ୱରରେ କହିଲେ—

—ବର୍ତ୍ତମାନ ଆମକୁ ଧୈର୍ଯ୍ୟ ଧରିବାକୁ ପଡ଼ିବ । ଆଉ ତ ଉପାୟ ନାହିଁ । ଷ୍ଟେସନ୍ ମଂଗଳ ଦେହରେ ପିଟି ହୋଇଯିବ । ଇସ୍ପାତ୍ ଛତାଟି ଯେତିକି ପାରିବ, ସେତିକି ଗତି କମେଇ ପାରିବ । ତେବେ ବ୍ୟସ୍ତ ହେବା ଆଉ ଦରକାର ନାହିଁ । ଯାହା ହେବ ହେଉ । ଭଗବାନ ଆମକୁ ନିଶ୍ଚୟ ବଂଚେଇ ରଖିବେ ।

ସିତାଂଶୁଙ୍କୁ ଚାହିଁଲି । ସେ ମୁହଁ ପୋତି ବସିଛନ୍ତି । ତାଂକ ଦେହରେ ଯେତେ ଯେମିତି ଆଉ ରକ୍ତ ନାହିଁ ! ଏତିକିବେଳେ ନିନା ଚିତ୍କାର କଲା—

—ଡକ୍ଟର୍, ଆମେ କ'ଣ ସମସ୍ତେ ମଂଗଳ ଗ୍ରହରେ ପେଷି ହୋଇଯିବା ? ତାର କଣ୍ଠରେ ମୁଁ ପ୍ରଥମ ଥର ପାଇଁ ଆତଂକ ଲକ୍ଷ୍ୟ କଲି । ବଗୁଗ୍ସ ସାଂଘାତିକ ଭାବରେ ଡରିଯାଇ ଥିଲି । ଦାଦା ମୋ ଆଡ଼କୁ ଚାହିଁଲେ । ତାଂକର ସେ ଚାହାଁଣୀରୁ ମୁଁ ସବୁ ବୁଝିପାରିଲି । ସେ ମୋ ପାଇଁ ଖୁବ୍ ଚିନ୍ତିତ ହୋଇ ପଡ଼ିଥିଲେ । ନୀରବରେ ସମସ୍ତଙ୍କ ମୁହଁକୁ ଥରେ ଆଖି ବୁଲାଇ ନେଲେ । ସେ ନିଜ ପାଇଁ ଆଦୌ ଚିନ୍ତା କରୁ ନ ଥିଲେ । ତାଂକ ଉପରେ ଆଶା ଭରସା କରି ଯେଉଁ କେତେଜଣ ଦୁଃସାହସୀ ଯାତ୍ରୀ ବାହାରି-ଥିଲେ, ସେମାନଂକ କଥା ସେ ଖୁବ୍ ଗମ୍ଭୀରଭାବେ ଚିନ୍ତା କରୁଥିଲେ । କେବଳ ସେମାନଙ୍କ ପାଇଁ ସେ ବିବ୍ରତ ହୋଇ ପଡ଼ିଥିଲେ ।

ମଂଗଳର ବାୟୁମଣ୍ଡଳରେ ପ୍ରବଳ ଭାବରେ ଘଷି ହୋଇ ହୋଷ୍ଟକ୍ ଜଳୁଥାଏ । ଦାଦା ଘଣ୍ଟା ଦେଖି ପାଟି କଲେ—ସାବଧାନ, କେତୋଟି ସେକେଣ୍ଡ ମାତ୍ର । ହାତରେ ଯାହା ପଡ଼ିଲା ଦୃଢ଼ଭାବରେ ଧରି ବସି ରହିଲୁ । ଭୟରେ ମୁଁ ଆଖି ବୁଜି ପକାଇଲି । ହଠାତ୍ ଅନୁଭବ କଲି ଏକ ପ୍ରଚଣ୍ଡ ଧକ୍କା । ସତେ ଯେମିତି ହୋଷ୍ଟକ୍ ମଂଗଳ ଗ୍ରହ ଭେଦ କରି ପଳାଇ ଯିବାକୁ ବ୍ୟାକୁଳ । ମୋ ମୁଣ୍ଡ ହୋଷ୍ଟକ୍ କାନ୍ଥରେ ଖୁବ୍ ଜୋର୍‌ରେ ପିଟି ହୋଇଗଲା । ଆଖି ବୁଜି-ହୋଇ ଆସିଲା । ପୁଣି ଥରେ ଆଉ ଗୋଟିଏ ଧକ୍କା । ବୋଧହୁଏ ହୋଷ୍ଟକ୍ ଗୋଟିଏ ପଥର ଦେହରେ ଆଉଥରେ ପିଟି ହୋଇଗଲା ।

ମୋର ଯେତେବେଳେ ଚେତନା ଫେରିଲା, ଦେଖିଲି ଦାଦା ମୋ ବେଲ୍ଟ ଫିଟାଇ ମୁଣ୍ଡରେ ପାଣି ଦେଉଛନ୍ତି । ଆଖି ଖୋଲି ଚାରିଆଡ଼କୁ ଚାହିଁଲି । ରିନା ଓ ନିନା ଚଟାଣରେ ଶୋଇଥାନ୍ତି । ହୋଷ୍ଟକ୍‌ରେ ଅସ୍ୱାଭାବିକ ନୀରବତା ମତେ ଟିକିଏ ଭଲ ଲାଗିଲା ।

ଉଠି ଠିଆ ହେଲି । ପୋପ୍‌ଭର୍ ଶନାର ଗୋଟିଏ ହାତ ବ୍ୟାଣ୍ଡେଜ୍ କରୁଥାନ୍ତି । ହାତଟା ତାର ଟିକିଏ ଫାଟି ଯାଇଥିଲା । ମୁଁ ତା ମୁଣ୍ଡ ପାଖରେ ବସି ମୁଣ୍ଡଟାକୁ ଧୋଇଦେଲି । କିଛି ସମୟ ପରେ ଶନା ଆଖି ଖୋଲିଲା । ବିଶେଷ କିଛି ଆଘାତ ପାଇ ନ ଥିଲା ସେ । ଉଠି ଠିଆହେଲା, ମାତ୍ର ବିଚରା ନନା ଆହତ ହୋଇପଡ଼ିଥିଲା । ଏ ପ୍ରଚଣ୍ଡ ଧକ୍‌କା ସହି ପାରିଲାନି ସେ । ବାନ୍ତି କରି ପକେଇଲା । ଅନେକ ଶୁଶ୍ରୂଷା ପରେ ଆଖି ଖୋଲିଲା । ତାକୁ ନେଇ ଶନା ବିଛଣାରେ ଶୁଆଇ ଦେଲା । ମୁଁ ଯାଇ ଭେଷ୍ଟିକ୍‌ର ଦ୍ୱାର ଖୋଲି ଦେଲି । ଉଜ୍ଜ୍ୱଳ ସୂର୍ଯ୍ୟାଲୋକ ପଶି ଆସିଲା । ବିଦ୍ୟୁତ୍‌ବତୀ ଲିଭେଇ ଦେଲି । ପ୍ରାୟ ତିନି ଦିନ ପରେ ଆମର ଅତି ପ୍ରିୟ ସୂର୍ଯ୍ୟାଲୋକ ଦେଖି ମୁଁ ସବୁ ଯନ୍ତ୍ରଣା ଭୁଲିଗଲି । ସୁଲୁସୁଲିଆ ପବନ ବାଜି ଦେହର ଦରଜ ସବୁ କୁଆଡ଼େ ଗୁଲିଗଲା ପରି ମନେହେଲା ।

ସିତାଂଶୁଙ୍କ ମନରେ ଆନନ୍ଦ ନ ଥାଏ । କିଛି ସମୟ ପରେ ସେ ଦାଦାଂଙ୍କ ପାଖକୁ ଆସି କହିଲେ, "ଡକ୍‌ଟର୍, ମୋର ପୂର୍ବ ବ୍ୟବହାର ପାଇଁ ମୁଁ ଆନ୍ତରିକ ଦୁଃଖିତ ।" ଦାଦା ହସିଉଠିଲେ ଏବଂ କହିଲେ—

—ଆରେ ସିତାଂଶୁ, ତୁମେ ସେଗୁଡ଼ାକ ଆହୁରି ଭାବୁଛ ନା ? ଛାଡ଼, ଏବେ ଆମେ ତ ମଂଗଳରେ ପହଂଚି ଯାଇଛୁ । ଏଥର ଟିକେ ଆନନ୍ଦ କର; ଖୁସି ହୁଅ । ଜୀବନରେ ଦୁଃଖ କରିବାକୁ ଭଗବାନ କେବେ କହି ନାହାଂନ୍ତି । ଆସ, ଟିକିଏ ବାହାରେ ବୁଲି ଆସିବା । ପରେ ଭେଷ୍ଟିକ୍ କଥା ଚିନ୍ତା କରିବା ।

ଦାଦାଙ୍କ ପଛରେ ଆମେ ଖପ୍‌ଖାପ୍ ହୋଇ ତଳକୁ ଓହ୍ଲାଇ ଆସିଲୁ ।

# ଶାନ୍ତ ମଙ୍ଗଳ

ଆମେ ଯେଉଁଠାରେ ଅବତରଣ କଲୁ, ସେଇଟା ଗୋଟାଏ ଖୁବ୍ ସଂକୀର୍ଣ୍ଣ ସମତଳ ଭୂମି । ତାର ଚାରିଆଡ଼େ ପର୍ବତ ଘେରି ରହିଥାଏ । ଆମ ଭାଗ୍ୟ ଭଲ, ରୋକେଟ୍ ସେ ପାହାଡ଼ରେ ପିଟି ହୋଇଯାଇ ନାହିଁ । ଦେଖିଲି, ସେ ଜାଗାଟାର ମାଟି ଖୁବ୍ କୋମଳ । ବେଶ୍ କଅଁଳିଆ ଘାସ ବି ଉଠିଥାଏ । ମୁଁ ସେ ଘାସ ପଡ଼ିଆ ଉପରେ ଗଡ଼ିଗଲି । ସେତେବେଳେ ଦିନ ସାଢ଼େ ଦଶଟା ହେଲେ ବି ସୂର୍ଯ୍ୟ କିରଣ ଆଦୌ ଟାଣ ଲାଗୁ ନ ଥାଏ । ଶୀତଦିନର ସକାଳ ସୂର୍ଯ୍ୟ ପରି ସୂର୍ଯ୍ୟ କିରଣ ବେଶ୍ ନରମ ଓ ଆରାମ ଲାଗୁଥାଏ । ମଂଗଳ ସୂର୍ଯ୍ୟଠାରୁ ଚଉଦ କୋଟି ମାଇଲରୁ କିଛି ବେଶି ଦୂର । ତେଣୁ ସୂର୍ଯ୍ୟ କିରଣ ପୃଥିବୀରେ ଯେତେ ତୀବ୍ର, ସେଠାରେ ସେତେ ତୀବ୍ର ନ ହେବାର କଥା ।

ରିନା ତ ବିଶେଷ ଆଘାତ ପାଇ ନ ଥିଲା । କିନା ପିଠିରେ ଔଷଧ ମାଲିସ୍ କରିଦେବା ପରେ ସେ ସୁସ୍ଥ ହୋଇଉଠିଲା । କିଛି ସମୟ ପରେ ସେ ରୋକେଟ୍‌ରୁ ଧୀରେ ଧୀରେ ଓହ୍ଲାଇ ଆସିଲା । କଅଁଳିଆ ସୂର୍ଯ୍ୟ କିରଣ । ତଳ ଘାସର କଅଁଳିଆ ଗାଲିଚା ତାକୁ ବେଶ୍ ଭଲ ଲାଗିଲା । ଖୁବ୍ ଖୁସିରେ ତଳେ ଗଡ଼ିଯାଇ କହିଲା—

—ଡକ୍ଟର୍, ଆଉ ପୃଥିବୀକୁ ଫେରିବା ନାହିଁ । ତମେ ସବୁ ତ ଅଛ । ମୋର ଆଉ ଚିନ୍ତା କ'ଣ ? ଏଇଠି ରହିଯିବା । ହଠାତ୍ ମୁଁ ଗୋଟାଏ ଆବିଷ୍କାର କଲି । ଦେଖିଲି, ସେ ପଡ଼ିଆର ଘାସଗୁଡ଼ାକ ପ୍ରକୃତରେ ଘାସ ନୁହେଁ, ଖୁବ୍ କଅଁଳ ଆଉ ଚିକ୍କଣ ଏକ ପ୍ରକାର ଶିଉଳି । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଏମିତି ଶିଉଳି ଉଠିଛି କାହିଁକି ? ମଝିରେ ମଝିରେ ଛୋଟ ଛୋଟ ବୁଦବୁଦିଆ ଫୁଲ

ଗଛ ବଣଲ୍ୟକରଣୀ ପରି ଦେଖାଯାଉଥାଏ । ଏହାର ଫୁଲ ବେଶ୍ ସୁଗନ୍ଧଯୁକ୍ତ । ମୁଁ ଗୋଟିଏ ଗଛକୁ ଉପାଡ଼ି ଆଣିଲି । ତାର ଚେରଗୁଡ଼ାକ ଅସ୍ୱାଭାବିକ ଭାବରେ ଲମ୍ବ ହେଲେ ବି ଗଛଟା ଖୁବ୍ ସୁନ୍ଦର ଦେଖାଯାଉଥାଏ । ମୁଁ ସେ ପଡ଼ିଆର ଚାରିଆଡ଼େ ବୁଲି ସବୁ ଦେଖିଲି । ଦାଦା, ପୋପ୍‌ଭର୍ ଓ ସିତାଂଶୁ ଚାରିଆଡ଼େ ପର୍ଯ୍ୟବେକ୍ଷଣ କରୁଥାନ୍ତି । ମୁଁ ଗୋଟିଏ ପଥର ଉପରକୁ ଉଠି ଚାରିଆଡ଼କୁ ଚାହିଁଲି । କେତୋଟି ଗଛ ଉପରେ ମୋ ଦୃଷ୍ଟି ପଡ଼ିଲା । ଏମିତି ବିଚିତ୍ର ଗଛ ଆଗରୁ ଦେଖି ନ ଥିଲି । ଗଛଗୁଡ଼ାକ ଖୁବ୍ ସରୁ ଓ ଦୁର୍ବଳ । ଦେହ ତୁଳନାରେ ସେଗୁଡ଼ାକର ଡାଳ କମ୍ ଓ ପାଇନ୍ ଗଛ ପରି ମତେ ଜଣାଗଲା । ମଂଗଳ ଗ୍ରହ ସାରା ଏମିତି ଗଛ ଭରି ରହିଛନ୍ତି । ପର୍ବତଗୁଡ଼ାକ ମଧ୍ୟ ବେଶି ଉଚ୍ଚ ନୁହେଁ । ସେଗୁଡ଼ାକ ସିଧା ଉପରକୁ ଉଠି ଆସ୍ତେ ଆସ୍ତେ ସରୁ ହୋଇଯାଇଛନ୍ତି । ସତେ ଯେମିତି କେହି ଜଣେ କୁମ୍ଭାରୀଟାଏ ଧରି ହାଣି ହାଣି ସବୁ ଗୁଡ଼ାକୁ ଗୋଟିଏ ପ୍ରକାର କରିଦେଇଛନ୍ତି । ପାହାଡ଼ଗୁଡ଼ାକ ପ୍ରାୟ ସମାନ ହୋଇଥିବାରୁ ବେଶ୍ ସୁନ୍ଦର ବି ଦେଖାଯାଉଥାନ୍ତି । ଆକାଶ ଖୁବ୍ ନିର୍ମଳ, ସୂର୍ଯ୍ୟ ଅତି ଉଜ୍ଜ୍ୱଳ ଦେଖାଯାଉଥାଏ ।

ତଳକୁ ଚାହିଁ ଦେଖିଲି ଦାଦା ଦୂରବୀକ୍ଷଣ ଯନ୍ତ୍ର ଧରି ଗଛପତ୍ର ପରୀକ୍ଷା କରୁଥାନ୍ତି । ସାନ ସାନ ବୁଦା ଉପାଡ଼ି ଦେଖୁଥାନ୍ତି । ତାଙ୍କ ପଛେ ପଛେ ପୋପ୍‌ଭର୍ । ମାତ୍ର ସିତାଂଶୁ ପାହାଡ଼ ଉପରେ ଚଢ଼ୁଥିଲେ । ମୁଁ ଦାଦାଙ୍କ ପାଖକୁ ଆସିଲି । ଏତିକିବେଳେ ଦାଦା ଗୋଟିଏ ଛୋଟ ବୁଦା ଉପାଡ଼ି ତାର ଚେର ପରୀକ୍ଷା କଲେ । ଏଇ ସୁଯୋଗରେ ଦାଦାଙ୍କୁ ପଚାରିଲି—

—ଦାଦା, ଏ ବୁଦାଗୁଡ଼ାକର ଚେର ଏତେ ଲମ୍ବା କାହିଁକି ?

ଦାଦା ଯେମିତି ସେ ଦୁଇଟାକୁ ପରୀକ୍ଷା କରୁ କରୁ କହିଲେ—

—ମୁଁ ତ ସେଇ କଥା ଭାବୁଛି । ତେବେ ବୋଧହୁଏ ଏ ସବୁ ଆତ୍ମରକ୍ଷା ପାଇଁ ।

—ଆତ୍ମରକ୍ଷା ପାଇଁ କ'ଣ ଚେର ଦରକାର ? ମୁଁ ପଚାରିଲି ।

ଦାଦା କିଛି ସମୟ ନୀରବ ରହି କହିଲେ—

—ମୁଁ ଗୋଟାଏ କଥା ଭାବୁଛି । ମଂଗଳ ଗ୍ରହରେ ଖୁବ୍ ଚଞ୍ଚଳ ଋତୁ ପରିବର୍ତ୍ତନ ଘଟେ, ଆଉ ଶୀତକାଳ ବେଶି ସମୟ ରହେ । ତେଣୁ ବରଫରୁ ଉଦ୍ଧାର ପାଇବାକୁ ଚେରଗୁଡ଼ାକ ଏତେ ଲମ୍ବା । ଅର୍ଥାତ୍ ଶୀତଦିନେ ବରଫ ପଡ଼ିଲେ ଏ ବୁଦାଗୁଡ଼ାକ ମରିଯା'ନ୍ତି, ମାତ୍ର ମାଟି ଭିତରେ ଚେର ଓ ମୂଳ ବଂଶ ରହିଥାଏ । ଶୀତକାଳ ଗଲା ପରେ ବରଫ ତରଳି ଯାଏ ଓ ବୁଦାଗୁଡ଼ିକ ପୁଣି କଅଁଳି ଉଠେ । ଏବେ ନିକଟରେ ଶୀତକାଳ ଯାଇଛି । ତେଣୁ ଏ ପଡ଼ିଆରୁ ଶିଉଳି ମରିନି । ତା' ଛଡ଼ା ଏଠାରେ ଆଦୌ ଘାସ ନାହିଁ । ଏଇ ଶିଉଳି ହିଁ ମଂଗଳ ଗ୍ରହର ଘାସ ।

ହଠାତ୍ କ'ଣ ଭାବି ମୁଁ ପାଖରେ ଥିବା ଗୋଟିଏ ଗଛ ପାଖକୁ ଦୌଡ଼ିଗଲି । ଗଛଟା ପ୍ରାୟ ଦଶ ବାର ଫୁଟ ଉଚ୍ଚ ହେବ । ତାକୁ ଧରି ଖୁବ୍ ଜୋର୍‌ରେ ହଲାଇବାକୁ ଚେଷ୍ଟା କଲି । ମୁଁ ଭାବିଥିଲି ଗଛଟା ଖୁବ୍ ଦୁର୍ବଳ, ଖୁବ୍ ହଲେଇ ହଲେଇ ତାକୁ ଭାଂଗି ପକେଇବି । ମାତ୍ର ଆଶ୍ଚର୍ଯ୍ୟର କଥା, ଗଛଟା ଭାଂଗିବା ଦୂରେ ଥାଉ, ସାମାନ୍ୟଭାବେ ହଲିବା ଛଡ଼ା ପତ୍ରଟିଏ ବି ଝଡ଼ିଲା ନାହିଁ । ମୁଁ ଆଶ୍ଚର୍ଯ୍ୟ ହୋଇଗଲି । ଏତେ ସରୁ, ଅଥଚ ଏତେ ଟାଣ !

ଦାଦା କହିଲେ—ଏ ଗଛ ବି ଶୀତ ଦିନରେ ମରିଯାଏ ନାହିଁ । ଗଛଟା ସରୁ ଓ ଶ୍ରେଷ୍ଠ ହୋଇଥିବାରୁ ବିଶେଷ ଖାଦ୍ୟ ଦରକାର କରେନା । ତା' ଛଡ଼ା ବରଫପାତ ମଧ୍ୟ ସହିପାରେ । ମୁଁ ପଚାରିଲି—

—ଆଚ୍ଛା ଦାଦା, ଏ ପର୍ବତଗୁଡ଼ାକ କମିତି ଜଣାଯାଉ ନାହାଁନ୍ତି ? ମତେ ଜଣାଯାଉଛି, ଏଗୁଡ଼ାକ କିଏ ଯେମିତି ପୋତି ଦେଇଯାଇଛି । ଗୁହପାଖରେ ସବୁଜ ସମତଳ ଭୂମି । ମଝିରେ ମଝିରେ ଗୋଟାଏ ପର୍ବତ ଅଛି । ଦାଦା କହିଲେ—

—ଆମେ ଯେଉଁଠି ଅବତରଣ କରିଛୁ, ସେ ଅଞ୍ଚଳଟା ଖୁବ୍ ସମତଳ । ତେଣୁ ଏ ପର୍ବତଗୁଡ଼ାକ ମଂଗଳ ଗ୍ରହର ପର୍ବତମାଳାର ଅଂଶ ନୁହନ୍ତି । ମଂଗଳପୃଷ୍ଠକୁ ପର୍ଯ୍ୟବେକ୍ଷଣ କରିବା ପରେ ଆମେ ଯାହା ଗୋଟିଏ ସିଦ୍ଧାନ୍ତ ଗ୍ରହଣ କରି ପାରିବା ।

ସିତାଂଶୁ ପର୍ବତ ଉପରୁ ଗୁହଆଡ଼କୁ ଲକ୍ଷ୍ୟ କରୁଥିଲେ ଦୂରବୀକ୍ଷଣରେ । ମୁଁ ଓ ଦାଦା ଏମିତି କଥାବାର୍ତ୍ତା ହେଉଛୁ, ସେ ଆସିଲେ ।

—ଆଚ୍ଛା ଡକ୍ଟର୍, ମଂଗଳ ଗ୍ରହରେ କ'ଣ ଜନପ୍ରାଣୀ ନାହାଁନ୍ତି ? ମୁଁ ତ ଏଠାରୁ ଦୁଇ ତିନି ମାଇଲ ଅଂଚଳ ମଧ୍ୟରେ କୌଣସି ମଣିଷ ବା ଚଳନ୍ତା ପ୍ରାଣୀ ଦେଖିବାକୁ ପାଇଲିନି । ସିତାଂଶୁ ଦାଦାଙ୍କୁ ପଚାରିଲେ ।

ଦାଦା ଦିଗ୍‌ବଳୟ ଉପରେ ଦୃଷ୍ଟି ରଖି ଉତ୍ତର ଦେଲେ—

—ତାହା ମୁଁ ଠିକ୍ କହି ପାରୁନି । କାରଣ ଏପର୍ଯ୍ୟନ୍ତ ଆମେ ମଂଗଳ ଗ୍ରହକୁ ଭଲରୂପେ ପର୍ଯ୍ୟବେକ୍ଷଣ କରି ସାରିନାହୁଁ ।

ତେବେ କିଏ ଜାଣେ, ଆମ ଦୃଷ୍ଟିର ଅନ୍ତରାଳରେ କୌଣସି ଜୀବନ୍ତ ପ୍ରାଣୀ ଆମକୁ ଲକ୍ଷ୍ୟ କରୁଥାଇ ପାରେ । ପ୍ରାଣୀର, ବିଶେଷତଃ ମଣିଷର ବଂଚିବା ପାଇଁ ଏଠାକାର ଜଳବାୟୁ ତ ବେଶ୍ ଅନୁକୂଳ; ଦେଖାଯାଉ ।

ଏମିତି କଥାବାର୍ତ୍ତା କରି ଆମେ ଭେଷ୍ଟକ୍‌ଠାରୁ ପ୍ରାୟ ଅଧ ମାଇଲିଏ ବାଟ ଚାଲି ଆସିଥିଲୁ । ଆଉ ଆଗକୁ ନ ଯାଇ ଫେରିଲୁ । ସମସ୍ତଙ୍କୁ ଭାରି ଭୋକ ଲାଗୁଥିଲା । ଖିଆପିଆ ସାରି ଗୋଟିଏ ବୈଠକ ଡାକିଲୁ । ବାହାର ପଡ଼ିଲା କିଏ କ'ଣ କରିବ । ସିତାଂଶୁ ରହିଲେ ଭେଷ୍ଟକ୍‌ର ଯନ୍ତ୍ରପାତି ପରୀକ୍ଷା କରିବାକୁ; ପ୍ରଫେସର୍ ପୋପ୍‌ଡର୍ ରହିଲେ ତାଂକର କେତୋଟି ପରୀକ୍ଷା ନିରୀକ୍ଷା ପାଇଁ । ତା' ଛଡ଼ା ସିତାଂଶୁଙ୍କୁ ମଧ୍ୟ ସେ ସାହାଯ୍ୟ କରିବେ । ଆଉ ନିନା ତ ସମ୍ପୂର୍ଣ୍ଣ ସୁସ୍ଥ ହୋଇ ନ ଥିଲା; ତେଣୁ ଆମେ ତାଙ୍କୁ ସଂଗରେ ନେବାକୁ ମନା କଲୁ । ନିନା ଭେଷ୍ଟକ୍‌କୁ ସଜେଇ ଠିକ୍ କରିବାକୁ କହିଲା । ଦାଦା, ରିନା ଓ ମୁଁ ବୁଲି ବାହାରିଲୁ ।

ରିନା ଭେଷ୍ଟକ୍‌ର ଓ ଆମର କେତୋଟି ଫଟୋ ନେଲା । ତାପରେ ଆମେ ଲକ୍ଷ୍ୟହୀନ ଭାବରେ ଆଗେଇଲୁ । ମାଟି ତ ସମତଳ; ଠାଏ ଠାଏ ବେଶ୍ କଅଁଳିଆ ଘିଅଳିଆ ବି ଥାଏ । ତେଣୁ ବେଶ୍ ଖୁସିରେ ନାଚି ନାଚି ଚାଲିଥାଉ । ଦାଦା ଟିକେ ପଛରେ ଚାରିଆଡ଼କୁ ଲକ୍ଷ୍ୟକରି ଆସୁଥାନ୍ତି । ମୁଁ ଟିକିଏ ଆଗରେ ଦେଖିଲି ଗୋଟିଏ ଛଅ ସାତ ଫୁଟର ଉଚ୍ଚ ଗଛ । ସେଥିରେ ପେନ୍ଥା ପେନ୍ଥା ହୋଇ ନାଲି ଫଳ ଫଳିଛି । ସେଥିରୁ କିଛି ତୋଳିଲି । ଖୁବ୍ ସୁନ୍ଦର ଦେଖାଯାଉଥାଏ । ଠିକ୍ ଅଂଗୁର ପରି ଫଳଗୁଡ଼ାକ ପାଚି ଲାଲ ହୋଇଥାଏ । ଖାଇବାକୁ ଇଚ୍ଛା ହେଲା, କିନ୍ତୁ ମନରେ ସନ୍ଦେହ

ହେଲ ! କାଳେ ଫଳଗୁଡ଼ାକ ବିଷାକ୍ତ ହୋଇଥିବ ! ରିନାକୁ ଡାକିଲି । ଦୁହେଁଯାକ ତାକୁ ବହୁତ ଏପଟ ସେପଟ ପରୀକ୍ଷା କରି ଜାଣିଲୁ, ବିଷାକ୍ତ ହୋଇ ନ ଥିବ । ଖୁବ୍ ସାବଧାନତା ଓ ସତର୍କତାରେ ଟିକେ ଚାଖିଲି । ବେଶ୍ ମିଠା ଲାଗିଲା । ଆଉ ଟିକେ ଖାଇଲି, ଖୁବ୍ ଭଲ ଲାଗିଲା । ମୁଁ ଓ ରିନା ସେଥିରୁ ମନଇଚ୍ଛା ଖାଇଲୁ । ଦାଦାଙ୍କୁ ଡାକି ତାଙ୍କୁ କିଛି ଦେଲୁ । ଆଉ କିଛି ତୋଳି ହେଲିକପ୍ଟରରେ ଥିବା ତିନିଜଣ ଯାତ୍ରୀଙ୍କ ପାଇଁ ରଖିଲୁ । ରିନା କହିଲା, “ଯାହାହେଉ, ମଙ୍ଗଳ ବେଶ୍ ଅତିଥିପରାୟଣ ।” ରିନା ଆଉ କେତୋଟି ରଙ୍ଗୀନ୍ ଫଟୋ ନେଲା ।

ମୋତେ ହଠାତ୍ ଗୋଟିଏ ଝରଣାର କଳ କଳ ଶବ୍ଦ ଶୁଣାଗଲା । କାନ ଡେରିଲି···ହଁ, ଝରଣାର ସ୍ପଷ୍ଟ କଳ କଳ ଶବ୍ଦ । ଶବ୍ଦକୁ ବାରି ମୁଁ ଓ ରିନା ବାହାରିଲୁ । ସେଇ ଫଳଗଛଠାରୁ କିଛି ବାଟ ଗଲା ପରେ ଝରଣାଟିଏ ଦେଖିଲୁ । ସରୁ ଧାରରେ ପାଣି କଳ କଳ ହୋଇ ଅଙ୍କାବଙ୍କା ପଥରେ ବହି ଯାଉଥାଏ । ବେଶ୍ ଥଣ୍ଡା ପାଣି, କିଛି ପାଣି ପିଇଲୁ । ତାପରେ ଝରଣାର ଉତ୍ସ ଖୋଜିବାକୁ ତାର କୂଳେ କୂଳେ ଚାଲିଲୁ । ଅଳ୍ପ ବାଟ ଯିବା ପରେ ଗୋଟିଏ ଛୋଟ ହ୍ରଦ ଆଖିରେ ପଡ଼ିଲା । ହ୍ରଦ ଚାରିପାଖରେ ନାନା ପ୍ରକାର ଫଳଗଛ । ଅନେକ ଫଳ ପାଚି ଡାଳରେ ଝୁଲୁଛି, ସବୁଜ ଗଛଲତା ହ୍ରଦଟାକୁ ବେଢ଼ି ରହିଛି । ହ୍ରଦଟା ବେଶ୍ ସୁନ୍ଦର ଦେଖାଯାଉଥାଏ । ଦାଦା ଆମ ପଛେ ପଛେ ଆସିଲେ । ହ୍ରଦ କୂଳରେ ଥିବା ଗୋଟିଏ ପଥର ଉପରେ ବସିଲୁ । କିଛି ସମୟ ଲକ୍ଷ୍ୟ କଲା ପରେ ଦେଖିଲୁ ହ୍ରଦ ମଝିଟା ଖୁବ୍ ଆନ୍ଦୋଳିତ ହେଉଅଛି । ଦାଦା କହିଲେ, ହ୍ରଦର ଉତ୍ସ ମାଟିତଳେ ରହିଛି ଓ ଉତ୍ସକୂପ ପରି ଜଳ ସେଥିରୁ ଖୁବ୍

ଜୋର୍‌ରେ ବାହାରୁଛି । ପାଣି ବେଶି ଗଭୀରରୁ ଆସୁ ନ ଥିବ; କାରଣ ବେଶି ଗଭୀରତାରୁ ପାଣି ଆସିଲେ ତାହା ନିଶ୍ଚୟ ଗରମ ଥାଆନ୍ତା । ଦାଦା କିଛି ସମୟ ଚୁପ ରହି ହ୍ରଦ ଆଉ ଝରଣାର ଗତିପଥକୁ ଲକ୍ଷ୍ୟକରି କହିଲେ—

—ଏ ଝରଣା ତ କେଉଁଠି ଯାଇ ଶେଷ ହୋଇଥିବ; ହୁଏତ ଏମିତି ଗୋଟାଏ ହ୍ରଦରେ ପଡ଼ୁଥିବ ବା କୌଣସି ବିରାଟ ଗାତରେ ପଡ଼ୁଥିବ, ନଚେତ୍ ବହି ଯାଇ ଧୀରେ ଧୀରେ ମାଟିରେ ହିଁ ଲୀନ ହୋଇ ଯାଇଥିବ । ଚାଲ ଦେଖିବା, ସେହି ଝରଣା କେଉଁଠି ପଡ଼ୁଛି । ଆମେ ବେଶ୍ ଖୁସିରେ ରାଜି ହୋଇଗଲୁ । ଝରଣାର ଗତିକୁ ଅନୁସରଣ କରି ଦାଦା ଆଗେ ଆଗେ ଗଲେ; ଆମେ ପଛେ ପଛେ ଚାଲିଲୁ ।

ଏମିତି ପ୍ରାୟ ମାଇଲଏ ଚାଲିବା ପରେ ଗୋଟିଏ ବଡ଼ ପାହାଡ଼ ଦେଖିଲୁ । ତାର ଶିଖରଟା ଅନେକ ଉଚ୍ଚ । ସେଇ ପାହାଡ଼ର ପାଦଦେଶରେ ପଥର ତଳେ ସରୁ ଧାରଟିଏ ଅଦୃଶ୍ୟ ହୋଇ ଯାଇଥାଏ । ଆମେ ବହୁତ ସନ୍ଧାନ ନେଲୁ, ମାତ୍ର ଜଳଧାରଟା ସେଇଠି କେଉଁଠି ଲୀନ ହୋଇଯାଇଥିଲା । ବହୁ କଷ୍ଟରେ ଆମେ ପର୍ବତ ଚଢ଼ିଲୁ । ଅଧାଅଧି ଯାଇ ଦେଖିଲୁ, ତା ପାଖକୁ ଲାଗି ଆଉ ଗୋଟିଏ ପର୍ବତ ପ୍ରାୟ ସେତିକି ଉଚ୍ଚତାରେ ଅଛି । ସେହି ଦୁଇ ପର୍ବତ ମଝିରେ ଗୋଟିଏ ବିରାଟ ଗାତ । ଝରଣାଟି ପଥର ତଳେ ଲୁଚି ଲୁଚି ଯାଇ ଏଇ ଗାତ ଭିତରେ ଅଦୃଶ୍ୟ ହୋଇ ଯାଇଥିଲା । ତେଣୁ ଖୁବ୍ ଧୀରେ ଧୀରେ ଝରଣାର ଶବ୍ଦ ଶୁଭୁଥିଲା ଗହ୍ୱର ଓ ଗମ୍ଭୀର ଗାତ ଭିତରୁ । ତଳକୁ ଅନେକ ସମୟ ଯାଏ ଚାହିଁଲୁ, ମାତ୍ର ଖାଲି ଅନ୍ଧାର ଛଡ଼ା ଆଉ କିଛି ଦେଖାଯାଉ ନ ଥାଏ । ଦାଦା କହିଲେ—

—ଖୋଜିବାକୁ ଆଉ ସମୟ ନାହିଁ; ନିକଟରେ ସନ୍ଧ୍ୟା ହୋଇଯିବ । କାଲି ଆସି ଦେଖିବା ।

—ଆଚ୍ଛା ଡକ୍‌ଟର୍, ଆପଣ ବୋଧହୁଏ ଇରିନସ୍କ କଥା ପୂରାପୂରି ଭୁଲି ଯାଇଛନ୍ତି । ରିନା ପଚାରିଲା ।

—କାହିଁକି ? ଆମେ ଭୁଲିଗଲୁ ବୋଲି ତୁମେ ଜାଣିଲ କିମିତି ? ଦାଦା ଆଶ୍ଚର୍ଯ୍ୟ ହୋଇ ପଚାରିଲେ । ରିନା କହିଲା—

—କାହିଁ ? ଆପଣ ସେ କଥା ତ ଆଉ ମନେପକାଉ ନାହାନ୍ତି ବା ଇରିନସ୍କ ଖୋଜୁ ନାହାଂନ୍ତି ?

—କିନ୍ତୁ ଇରିନସ୍କ ଯେ ଖଣିଜ ପଦାର୍ଥ; ସେଗୁଡ଼ା ଖୁବ୍ ପୁରୁଣା ପାହାଡ଼ିଆ ସ୍ଥାନରେ ମିଳିଲେ ମିଳିପାରେ ।

—ଇରିନସ୍କ ଏଇଠି ତ ମିଳିପାରେ । ଏଇ ଅଂଚଳଟା ଖୁବ୍ ପାହାଡ଼ିଆ । ବହୁତ ପୁରୁଣା ଅଂଚଳ ପରି ଜଣା ପଡ଼ୁଛି । ଏଇ ପଥରଗୁଡ଼ାକରେ ଲୁହା ଅଂଶ ଥିବା ପରି ଜଣାଯାଉଛି ।

ରିନା ଖଣ୍ଡେ ପଥର ଧରି ଏପଟ ସେପଟ କରୁ କରୁ କହିଲା—

—ହଁ, ଏଇ ଗାତ ତଳେ ବା କାନ୍ଥରେ ଇରିନସ୍କର ସନ୍ଧାନ ମିଳିପାରେ । ଏଇଠି ଗଛପତ୍ର କିଛି ନାହିଁ । ନିତାନ୍ତ ପଥୁରିଆ ଜାଗାଟା । ତେବେ ସଠିକ୍ ଭାବରେ ତ କହି ହେବନି । ଅନୁମାନ କରିବା କଥା, କାଲି ଦେଖିବା । ମାତ୍ର ଯିବାକୁ ତ କିଛି ଉପାୟ ଦିଶୁ ନାହିଁ । ରିନା ପର୍ବତଧାରରେ ପେଟେଇ ପଡ଼ି ଗାତକୁ ଚାହିଁଲା । କିଛି ସମୟ ପରେ କହିଲା—

—ଡକ୍‌ଟର୍ ଦେଖନ୍ତୁ ତ, ଏଇଠି ଗୋଟାଏ କିଛି ବାଟ ଥିବା ପରି ଜଣାଯାଉଛି । ଅନ୍ତତଃ ପଥରରେ ପ୍ରାକୃତିକ ପାହାଚ

ଥାଇପାରେ । ମୁଁ ଓ ଦାଦା ଗାତ ମୁହଁରୁ ତଳକୁ ଗ୍ଭହିଁଲୁ । ଦାଦା ଶୋଇପଡ଼ି ଦେଖୁଥାନ୍ତି, ମାତ୍ର ମୁଁ ବସି ଗ୍ଭହୁଁଥାଏ ।

## ଠେକୁଆ ଗାତରେ

ହଠାତ୍ ମୋ ବାଁ ପାଦତଳୁ ମେଞ୍ଚାଏ ମାଟି ଖସିଗଲା । ମୁଁ ଛନିଆ ହୋଇ ପଛକୁ ହାମୁଡ଼େଇ ପଡ଼ିଲି । ଡାହାଣ ପାଦଟା ବି ଖସିଗଲା । ଦାଦା ହାଁ ହାଁ କରି ମୋତେ ଧରିବା ପୂର୍ବରୁ ମୋ ପାଦ ଦୁଇଟା ସହ ଗୋଡ଼ ଦୁଇଟା ଗାତ ଭିତରକୁ ଖସିବା ଆରମ୍ଭ କରିଦେଇଥିଲା । ମୁଁ ହାତରେ ଗାତ ମୁହଁକୁ ଧରି ଅଟକି ଯିବାକୁ ଚେଷ୍ଟା କଲି, କିନ୍ତୁ ସେତିକି ହେଲା ନାହିଁ । ମୁଠା ଭିତରେ ମୁଠେ ମୁଠେ ମାଟି ଧରି ଖସିଗଲି । ଦାଦା ଓ ରିନା ଚିତ୍କାର କରି-ଉଠିଲେ । ମାତ୍ର ସେତେବେଳକୁ ସେମାନଙ୍କର ଉପାୟ ନ ଥିଲା । ମୁଁ ତଳକୁ ଖସି ଯାଉଥିଲି ।

ମୁଁ ଖସି ଗ୍ଭଲିଛି । ତଳକୁ ଗ୍ଭହିଁଲି । କଟିକଟି ଅନ୍ଧାର । ତଳ ଦେଖାଯାଉ ନ ଥାଏ । ଭାବିଲି, ବୋଧହୁଏ କେତେ ହଜାର ଫୁଟ ତଳେ ପଡ଼ିବି । ତଳେ କ'ଣ ଥିବ, ମୋ ମାଂସ, ହାଡ଼ସବୁ ପେଶି ହୋଇଗଲେ ଅକର୍ମଣ୍ୟ ହୋଇଯିବ । ମୋ ଦେହ ଶୀତେଇ ଉଠିଲା । ହାଡ଼ଗୁଡ଼ାକ ଯେତେକ ମୃତ୍ୟୁ ଭୟରେ ଆର୍ତ୍ତନାଦ କରି-ଉଠିଲେ ! ମୁଁ ସାଇଁ ସାଇଁ ହୋଇ ଖସି ଗ୍ଭଲିଛି । ହଠାତ୍ ହାତ ଦୁଇଟାକୁ ଲମ୍ବେଇ ଦେଲି । ଡାହାଣ ହାତରେ କ'ଣ ଗୋଟାଏ ବାଜିଲା । ଦୁଇ ହାତରେ ତାକୁ ଧରି ପକାଇଲି । ସେ ଗାତର କାନ୍ଥରେ ଗୋଟାଏ କି ଗଛ ଉଠିଥିଲା । ତାକୁ ପ୍ରାଣ ବିକଳରେ ଧରି ପକାଇଲି । ମାତ୍ର ସେ ଗଛଟା ମୋ ବେଗ ସମ୍ଭାଳି ପାରିଲା

ନାହିଁ । ଫଗେ ଫଗେ ଉପୁଡ଼ି ଆସିଲା । ଗଛ ଯାହାତ ପୁଣି ଖସିଲି । ମୋ ଗତି କମିଗଲା । ମୁଁ ସେ କାନ୍ଥ ଆଡ଼କୁ ଆଉଜି ଗଲି । ଆଉ କେତୋଟି ସେକେଣ୍ଡ ପରେ ମୋ ଗତି ହଠାତ୍ ବନ୍ଦ ହୋଇଗଲା । ଗୋଟିଏ ବଡ଼ ପଥର ଉପରେ ମୁଁ ଠିଆ ହୋଇଗଲି । ଭାବିଲି, ଗାତ ଶେଷରେ ମୁଁ ପହଂଚିଲି କି ! ତଳକୁ ଚାହିଁଲି, ଅଂଧାର ଛଡ଼ା ଆଉ କିଛି ଦେଖାଯାଉ ନ ଥାଏ । ଝରଣାର ଶବ୍ଦ ଧୀରେ ଧୀରେ ଶୁଭୁଥାଏ । ପଥରଟାଏ ସେ ଗାତର ଆଗକୁ ବାହାରି ଥିଲା । ଉପରେ ମୋ ଦେହରୁ ଗୋଟାଏ ଝାଳ ବୋହିଗଲା । ଛାତି ଧପ୍ ଧପ୍ ହେଉଥାଏ । ବାଟରେ ଘଷି ହୋଇ କହୁଣୀ ଓ ହାତ ଛିଣ୍ଡି ତହିଁରୁ ରକ୍ତ ବାହାରୁଥାଏ । ତାହା ପଚାରୁଛି କିଏ ? ଯାହାହେଉ ପ୍ରାଣଟା ତ ରହିଗଲା । ଉପରକୁ ଚାହିଁଲି । ଦାଦା ଓ ରିନା ଗାତ ମୁହଁରେ ପେଟେଇ ପଡ଼ି ତଳକୁ ଚାହିଁଥାନ୍ତି । ଦାଦା ମୋତେ ଡାକିଲେ—

—ଶ୍ୟାମଳେନ୍ଦୁ, ଶ୍ୟାମଳେନ୍ଦୁ, ତୁମେ କେଉଁଠି ?

ବୋଧହୁଏ ମୋତେ ଦେଖିପାରୁ ନ ଥିଲେ । ମୁଁ କହିଲି—

—ଦାଦା, ବେଶ୍ ଭଲ ଅଛି । ଏଇଠି ବାଟରେ ଅଟକି ଗଲି । ଗୋଟାଏ ପଥର ଉପରେ ବସିଛି । ଖାଲି ହାତ ଓ କହୁଣୀ ଟିକିଏ ଛିଣ୍ଡି ଯାଇଛି ।

—ହଉ, ବ୍ୟସ୍ତ ହେବା ଦରକାର ନାହିଁ । ଆମେ ତତେ ଖୁବ୍ ଶୀଘ୍ର ବାହାର କରି ଆଣିବୁ । ତତେ ଟିକେ ଟିକେ ଦେଖି-ପାରୁଛି । ଖୁବ୍ ଅନ୍ଧାର ହୋଇଛି ନା ! ତୁ ପଚାଶ ଫୁଟ ଖଣ୍ଡେ ତଳକୁ ଖସି ପଡ଼ିଛୁ । ରିନା ଏବେ ଷ୍ଟୋଭ୍‌କରୁ ଦଉଡ଼ି ନେଇ

ଆସିବ । ମୁଁ ଦେଖେ, ତୋ ପାଖକୁ ମିବାକୁ ବାଟ ଅଛି କ ନାହିଁ ।

ସେମାନେ ଉଠି ଠିଆହେଲେ । ଶନା ବୋଧହୁଏ ଦଉଡ଼ି ଖଣ୍ଡେ ଆଣିବାକୁ ଆମ ଘାନକୁ ଚଲ୍ । ସେମାନେ ଗୁଲଯିବାରୁ ମୋତେ ଖୁବ୍ ଭୟ ଲଗିଲ୍ । ଗାତ ଭିତରଟା ଖୁବ୍ ମାଡ଼ ମାଡ଼ ପଡ଼ିଲ୍ । ଜାନୁକୁ ଆଉଜ ବସି ପଡ଼ିଲ । ଖୁବ୍ ଥଣ୍ଡା ଲଗିଲ୍ । ଗୋଟିଏ ମିନଟ୍ ମୋତେ ଗୋଟାଏ ଯୁଗ ପର ଲଗୁଥାଏ । ଉପରକୁ ଗୁହିଁଲ, ଆଲୁଅ କମି ଆସିଲ୍ଣି । ବୋଧହୁଏ ସୂର୍ଯ୍ୟାସ୍ତ ପ୍ରାୟ । ଥଣ୍ଡା ଓ ଶୀତରେ ମୋ ଦେହ ଥରଲ୍ଣି । ଗୁରଆଡ଼େ ଶୂନ୍ୟତା ଓ ନୀରବତା । ଖୁବ୍ ଉତ୍କଣ୍ଠିତ ହୋଇ ଦାଦାଂକୁ ଅପେକ୍ଷା କଲ ।

କିଛି ସମୟ ପରେ ଦାଦା ଆସି ଗାତ ମୁହଁରେ ଦେଖା ଦେଲେ । କହିଲେ, "ଶ୍ୟାମଳେନ୍ଦୁ, ଆଉ କୌଣସି ବାଟ ପାଉ ନାହିଁ ତୋ ପାଖକୁ ଯିବାକୁ ।" ଠିକ୍ ଏତିକବେଳେ ଶନାକୁ ଦେଖି ପାରିଲ । କିଛି ସମୟ ପରେ ଗୋଟିଏ ଦଉଡ଼ି ମୋ ପାଖରେ ଝୁଲି ପଡ଼ିଲ୍ । ମୁଁ ତାକୁ ଅଣ୍ଟାରେ ବାଂଧି ଦେଲ । ତାପରେ ଦାଦା ଓ ସିତାଂଶୁ ମୋତେ ବାହାରକୁ ଟାଣି ଆଣିଲେ । ଦାଦା ଖୁସିରେ ମୋତେ ଜୁଣ୍ଡେଇ ପକାଇଲେ । ସମସ୍ତେ ଅତିଶୟ ଖୁସି ହୋଇଗଲେ । ସେମାନେ ବୋଧହୁଏ ଭାବିଲେ, ମୁଁ ଗୋଟିଏ ଖୁବ୍ ଗୌରବପୂର୍ଣ୍ଣ କାର୍ଯ୍ୟ କର ପକାଇଛି । ପିଲ୍ଦିନେ ପଢ଼ିଥିବା ଠେକୁଆ ଓ ଆଲସ୍ ଗପ ମୋର ହଠାତ୍ ମନେ ପଡ଼ିଗଲ୍ । ମୁଁ କହିଲ, "ମୁଁ ପର ଗାତରେ ପଶି ଠେକୁଆକୁ ଖୋଜୁଥିଲ ।"

ସମସ୍ତେ ଖୁବ୍ ଜୋର୍‌ରେ ହସି ଉଠିଲେ । ସୂର୍ଯ୍ୟାସ୍ତ ହେବା ଉପରେ । ଟୁବ୍ ଥଣ୍ଡାରେ ଦେହ ଥରିବାକୁ ଆରମ୍ଭ କଲ୍ଣି । ସୂର୍ଯ୍ୟାସ୍ତ

ହେଉ ହେଉ ଏ କ ଅଣ୍ଡା ! ଦାଦା କହିଲେ, "ସୂର୍ଯ୍ୟଠାରୁ ମଂଗଳ ଗ୍ରହ ବହୁତ ଦୂରରେ ଥିବାରୁ ପୃଥିବୀ ଯେତିକ ସୂର୍ଯ୍ୟାଲୋକ ପାଏ, ମଙ୍ଗଳ ଗ୍ରହ ତାଠାରୁ ଅଧା ପାଏ । ଏଣୁ ଏଠାରେ ସନ୍ଧ୍ୟା ହେଉ ହେଉ ଖୁବ୍ ଶୀତ କରେ ।"

ତରତର ହୋଇ ଆମେ ଭେଷ୍ଟିକ୍ ଆଡ଼କୁ ଗ୍ଳଲୁ ।

## ଦୁଇଟା ଚନ୍ଦ୍ର

ଖିଆ ସରିଲାବେଳକୁ ରାତି ପ୍ରାୟ ଆଠଟା ହେବ । ଦାଦା ଓ ଅନ୍ୟମାନେ ଟିକଏ ଗଡ଼ପଡ଼ ହେଉଥାନ୍ତି । ମୁଁ ଭାବିଲି, ଟିକଏ ବାହାରେ ବୁଲି ଆସେ । ଗରମ ଜାମା ପିନ୍ଧି ଭେଷ୍ଟିକ୍‌ର ଦ୍ୱାର ଖୋଲି ବାହାରକୁ ଗଲି । ଓଃ ! କି ଅତ୍ୟଧିକ ଶୀତ ! ମାତ୍ର ଚ଼ଉଆଡ଼ ବେଶ୍ ସଫା ଦେଖାଯାଉଥାଏ । ଶାନ୍ତ ଓ ଶୀତଳ ଚନ୍ଦ୍ର କିରଣରେ ମଂଗଳ-ପୃଷ୍ଠ ଶୋଇ ପଡ଼ିଥିବା ପରି ମନେହେଲା । ଚ଼ଉଆଡ଼ ଖୁବ୍ ନିସ୍ତବ୍ଧ । ଆକାଶ ଗ୍ଭତିରେ ମଂଗଳ ଗ୍ରହର ପୂର୍ଣ୍ଣଚନ୍ଦ୍ରଟା ଉଦୟ ହୋଇ ଆସୁଥାଏ । ଖୁବ୍ ଶୀତ ହେଲେ ବି ଏ ଶାନ୍ତ ବାୟୁମଣ୍ଡଳ ସୁଖ ଲାଗିଲା । ଗୋଟାଏ ପଥର ଉପରେ ରୁମାଲ ପକାଇ ବସି ପଡ଼ିଲି । ଆକାଶଟା ଖୁବ୍ ସଫା ଦେଖାଯାଉଥାଏ । ତାରକାଗୁଡ଼ାକ ବି ଅତି ଉଜ୍ଜ୍ୱଳ ଦେଖାଯାଉଥାନ୍ତି । ମଂଗଳର ଆକାଶଟା ଏତେ ସୁନ୍ଦର ହୋଇଥିବ ବୋଲି ଭାବି ନ ଥିଲି । ପୃଥିବୀର ଆକାଶ ପରି ମଂଗଳର ଆକାଶଟା ଏତେ ନୀଳ ନୁହେଁ, ଟିକେ କଳା; ଠିକ୍ ଗଣ୍ଡିର ପାଣି ପରି ।

ହଠାତ୍ ଦିଗ୍‌ବଳୟ ତଳେ ଆଉ ଗୋଟିଏ ବଡ଼ ଆଲୋକପିଣ୍ଡୁଳା ହଠାତ୍ ଦେଖାଗଲା । ସେଇଟା କ୍ରମଶଃ ଉଠି ଆସୁଥାଏ । ମୁଁ

ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥାଏ । ଚନ୍ଦ୍ରଟା ଆସ୍ତେ ଆସ୍ତେ ଉଠିଆସିଲା । ଆକାଶରେ ଏକାବେଳେ ଦୁଇଟା ଚନ୍ଦ୍ର ! ପ୍ରଥମେ ଯେଉଁ ଚନ୍ଦ୍ରକୁ ଦେଖିଲି ତାହା ଆମ ପୃଥିବୀର ଚନ୍ଦ୍ର ପରି ଦେଖାଯାଉଥିଲା । ମାତ୍ର ଦ୍ୱିତୀୟ ଚନ୍ଦ୍ରଟା ପ୍ରଥମ ଅପେକ୍ଷା ଆହୁରି ଉଜ୍ଜ୍ୱଳ ଓ ବଡ଼ ଦିଶୁଥିଲା । ମୁଁ ଦେଖିଲି ଦୁଇଟାଯାକ ଚନ୍ଦ୍ର ଆଗ ପଛ ହୋଇ ଆକାଶରେ ଦୌଡ଼ିବା ଆରମ୍ଭ କରିଦେଲେଣି । ସେମାନଙ୍କ ଗତିବିଧି ମୋ ଆଖି ଆଗରେ ଧରା ପଡ଼ିଗଲା । ମୁଁ ଆଶ୍ଚର୍ଯ୍ୟ ହୋଇ ଚାହିଁ ରହିଥାଏ । ସେଇଠି ଥାଇ ଦାଦାଙ୍କୁ ଡାକ ପକାଇଲି । ମୋ ଡାକ ଶୁଣି ଦାଦା, ପୋପ୍‌ଭର୍ ଓ ରନା ବାହାରେ ଆସିଲେ । ସେମାନଙ୍କୁ ଆକାଶ ଦେଖାଇ ଦେଲି । ରନା ଆଶ୍ଚର୍ଯ୍ୟ ହୋଇ ପାଟିକଲା—

—ଆରେ, ଏ ତ ଦୁଇଟା ଚନ୍ଦ୍ର !

ଦାଦା ହସି ହସି ପୋପ୍‌ଭର୍‌ଙ୍କୁ କହିଲେ, "ପୋପ୍‌ଭର୍, ଏମାନଙ୍କୁ ବୁଝାଇ ଦିଅ ତ ।" ପୋପ୍‌ଭର୍ ଆମ ଆଡ଼କୁ ଚାହିଁ କହିଲେ—

—ପୃଥିବୀର ସିନା ଗୋଟିଏ ଉପଗ୍ରହ, ସବୁ ଗ୍ରହର ତ ସମାନ ଉପଗ୍ରହ ବା ଚନ୍ଦ୍ର ନାହାନ୍ତି । ମଂଗଳର ଦୁଇଟା, ବୃହସ୍ପତିର ଦଶଟା, ଶନିର ନଅଟା । ମଂଗଳର ଉପଗ୍ରହ ଦୁଇଟା—ଫିବସ୍ ଓ ଡିମସ୍ ! ଦୁଇଟାଯାକର ଆକାର ପ୍ରାୟ ସମାନ । ସେମାନେ ଖୁବ୍ ଶୀଘ୍ର ମଂଗଳକୁ ପ୍ରଦକ୍ଷିଣ କରନ୍ତି । ସେମାନଙ୍କର ଆକାର ମଧ୍ୟ ଆମ ଚନ୍ଦ୍ରଠାରୁ ବହୁତ ଛୋଟ । ସେମାନେ ମଂଗଳର ଖୁବ୍ ପାଖରେ ତାକୁ ପ୍ରଦକ୍ଷିଣ କରୁଥିବାରୁ ଏତେ ବଡ ଦେଖାଯାନ୍ତି । ପ୍ରଥମ ଚନ୍ଦ୍ରଟା ଡିମସ୍—ସେଇଟା ଫିବସ୍ ଅପେକ୍ଷା ମଂଗଳଠାରୁ ଅଧିକ ଦୂରବର୍ତ୍ତୀ । ଆଉ ଗୋଟିଏ ମଜା କଥା ଅଛି । ଡିମସ୍ ଓ ଫିବସ୍ ଗୋଟାଏ ଗତିରେ

ମଂଗଳକୁ ଦୁଇ ଥର ଲେଖାଏଁ ପ୍ରଦକ୍ଷିଣ କରନ୍ତି । ତୁମେ ଯଦି ସାରା ରାତି ଆକାଶକୁ ଲକ୍ଷ୍ୟ କରିବ, ତେବେ ଡିମସ୍‌କୁ ପ୍ରଥମ ଥର ଓ ଫିବସ୍‌କୁ ଦ୍ୱିତୀୟ ଥର ଦେଖିବ । ମାତ୍ର ମଂଗଳର ରାତି କେବେ ହେଲେ ଅଂଧାର ହୁଏନା । ମଂଗଳପୃଷ୍ଠ ଏତେ ଆଲୋକିତ ହୋଇଥାଏ ଯେ ବାହାରେ ପଡ଼ିହେବ । ଏତିକିବେଳେ ତାଙ୍କୁ ପ୍ରସ୍ତାବ ଦେଲି—

—ଆଚ୍ଛା ଦାଦା, ଭେଷ୍ଟକ୍‌ରୁ ଚଉକି ଉଠାଇ ଆଣି ଏଠି ବସିଲେ କେମିତି ହୁଅନ୍ତା ? ଅନ୍ତତଃ ଆଲୋଚନାଟା ସାରି ହୋଇଯିବା ।

ରିନା ମୋ ପ୍ରସ୍ତାବକୁ ସମର୍ଥନ କଲା । ଆମେ ଭେଷ୍ଟକ୍‌ରୁ ପାଞ୍ଚଟା ଚଉକି ଆଉ ଛୋଟ ଷ୍ଟୁଲଟାଏ ଆଣି ବାହାରେ ପକେଇଲୁ । ଷ୍ଟୁଲ ଉପରେ ବିଦ୍ୟୁତ୍ ଷ୍ଟୋଭ୍‌ଟା ରଖାଗଲା ଟିକିଏ ଉଷୁମ ଲାଗିବ ବୋଲି । ସମସ୍ତେ ବସିଲୁ । ଦାଦା ପଚାରିଲେ—

—ସିତାଂଶୁ, ମୋଟରର ଅବସ୍ଥା କେମିତି ?

—ସାଂଘାତିକ । ସଂକ୍ଷେପରେ ଉତ୍ତର ଦେଲେ ସେ । ବୋଧହୁଏ ସେ ଖୁବ୍ ଦୁଃଖିତ ସେଥିପାଇଁ ।

—କ'ଣ ହୋଇଛି ? ଦାଦା ସେମିତି ଶାନ୍ତଭାବେ ପଚାରିଲେ ।

ଭେଷ୍ଟକ୍ ମଂଗଳ ଗ୍ରହରେ ଆସି ପିଟି ହୋଇଯିବାରୁ ମୋଟରର କିଛି ଅଂଶ ଭାଂଗି ଯାଇଛି ଓ ଇଂଜିନ୍‌ର କିଛି ଅଂଶ ସଂପୂର୍ଣ୍ଣ ନଷ୍ଟ ହୋଇଯାଇଛି ।

—ଆଚ୍ଛା, ତାକୁ ମରାମତି କରି ହେବନି ? ଦାଦା ପଚାରିଲେ ।

—ହଁ, ମରାମତି କରି ହୁଅନ୍ତା, ମାତ୍ର ସେ ଲୁହାପ୍ଲେଟ୍‌ରେ ଅନେକ ଖଣ୍ଡ ଖଣ୍ଡ ଲୁହା ଗଳି ଯାଇଛି । ସେଇଟା ସମ୍ପୂର୍ଣ୍ଣ ଅକାମୀ ହୋଇପଡ଼ିଛି । ଅଧିକା ପ୍ଲେଟ୍ ତ ଆମ ପାଖରେ ନାହିଁ । ପ୍ଲେଟ୍ ବିନା ମୋଟରର ଚାଲିବନି । ସିତାଂଶୁ ଉତ୍ତର ଦେଲେ ।

—କେବଳ ସେତିକି ନୁହେଁ, ଆମ ରେଡିଓ-ଟେଲିଗ୍ରାଫ୍ ଯନ୍ତ୍ରଟା ବି ଅଚଳ ହୋଇଯାଇଛି । ତେବେ ଆମେ ତାକୁ ବିଶେଷ ଦୃଷ୍ଟି ଦେଇନାହୁଁ । ଚେଷ୍ଟା କରିବା ଷ୍ଟେସନ୍‌ଟାକୁ କେତେ ପରିମାଣରେ ସଜାଡ଼ି ପାଇପାରିବ; ପୋପ୍‌ଭର୍ କହିଲେ ।

ଭଗବାନ ବୋଧହୁଏ ଆମର ଗ୍ରହାନ୍ତର ଯାତ୍ରାକୁ ପସନ୍ଦ କରୁ ନ ଥିଲେ । ପୃଥିବୀରେ ଏ ଉଦ୍ୟମ ଆରମ୍ଭ କରିବାଠାରୁ ମଂଗଳରେ ପହଂଚିବା ପର୍ଯ୍ୟନ୍ତ ଆମକୁ ବିପଦ ଗୋଡ଼େଇ ଚାଲିଛି । କିନ୍ତୁ ଏଥର ଆଉ ଉପାୟ କ'ଣ ? ପ୍ରକୃତି ବିରୁଦ୍ଧରେ ଆମ ସଂଗ୍ରାମ କ'ଣ ଏମିତି ବିଫଳ ହୋଇଯିବ ? ଆମ ସମସ୍ତଙ୍କ ମନରେ ଦୁଃଖର ଛାୟା । ସିତାଂଶୁ ସମସ୍ତଙ୍କଠାରୁ ଅଧିକ ଦୁଃଖିତ ଓ ଅନୁତପ୍ତ ପରି ଜଣାଗଲେ । ସେ କହିଲେ—

—ମୁଁ ପ୍ରକୃତରେ ଅନୁତାପ କରୁଛି ଡକ୍‌ଟର୍ । ମୋର ଅବହେଳାରୁ ହିଁ ଏ ଦୁର୍ଘଟଣା ଘଟିଲା । ମୋଟରକୁ ତିଆରି କଲାବେଳେ ତାର ନିରାପତ୍ତା ପାଇଁ ଯଥେଷ୍ଟ ବ୍ୟବସ୍ଥା କରିବା ମୋର ଉଚିତ ଥିଲା । ମାତ୍ର ମୁଁ ଭାବିଲି, ଯାହା କରୁଛି ତାହା ନିର୍ଭୁଲ । ଆଜି ତାହାର ଫଳ ଭୋଗିବାକୁ ପଡ଼ୁଛି ଆମ ସମସ୍ତଙ୍କୁ । ସିତାଂଶୁ ମୁହଁ ଲୁଚାଇଦେଲେ, ବୋଧହୁଏ ଆଖିର ଲୁହ ଲୁଚାଇବାକୁ ।

ସମସ୍ତେ ଚୁପ୍‌ଚାପ୍ । ଅନେକ ସମୟ ପରେ ଷ୍ଟେସନ୍ ଉପରୁ କାହାର ଡାକରେ ଆମେ ଚମକି ଗଲୁ । ସେତେବେଳକୁ ରାତି

ସାଢ଼େ ନଅଟା । ବରଫ ପଡ଼ିବା ଆରମ୍ଭ କଲାଣି । ତରତର ହୋଇ ଉପରକୁ ଚଢ଼ିଲୁ ।

## ପର୍ଯ୍ୟବେକ୍ଷଣ

ସକାଳୁ ନିନା ପାଭ୍ଲୋଭ୍ନାର ଡାକରେ ମୋ ନିଦ ଭାଙ୍ଗିଗଲା । ହୋଷ୍ଟେଲ୍ ଭିତରଟା ତ ଶୀତତାପ ନିୟନ୍ତ୍ରିତ । ତେଣୁ ବାହାରେ ବରଫ ପଡ଼ିଲେ ବି ଭିତରଟା ବେଶ୍ ଉଷୁମ ଥାଏ । ଉଠି ଚଂଚଳ ନିତ୍ୟକର୍ମ ସାରି ଜଳଖିଆ ଖାଇବାକୁ ଗଲି । ଅନ୍ୟମାନେ ଆଗରୁ ସେଠାରେ ପହଞ୍ଚି ସାରିଥାନ୍ତି । ସିତାଂଶୁ ଆଉ ପୋପ୍ଭିଚ୍ ଖାଉଥାନ୍ତି ।

—କିମିତି ଲାଗୁଛି ଶ୍ୟାମଳେନ୍ଦୁ ? କାଲି ଯେ କୂଅଟାରେ ଖସିପଡ଼ି ବିଶେଷ ଖରାପ ଲାଗୁ ନାହିଁ ତ ? ଦାଦା ପଚାରିଲେ । ମୁଁ କହିଲି—

—ନା, ହାତ ଆଉ କହୁଣୀ ଟିକିଏ ଘଷି ହୋଇ ଯାଇଥିଲା । ଏବେ ଆଉ କିଛି ଖରାପ ଲାଗୁନି ।

ଏତିକିବେଳେ ସିତାଂଶୁ ଓ ପୋପ୍ଭିଚ୍ ଖାଇସାରି ଉଠିଲେ । ପୋପ୍ଭିଚ୍ କହିଲେ—

—ଅନ୍ୟମାନେ ଖାଇ ବସିଥିବାବେଳେ ଆମେ ଉଠିଯିବାଟା ଅଭଦ୍ରତା ନିଶ୍ଚୟ । କିନ୍ତୁ ଏ କ୍ଷେତ୍ରରେ ସମସ୍ତଙ୍କ ମଙ୍ଗଳ ପାଇଁ ଅଭଦ୍ରତା ଆଚରଣ କରୁଥିବାରୁ ଏଇଟା ଅନ୍ତତଃ କ୍ଷମଣୀୟ ।

—ଅର୍ଥାତ୍ ? ରିନା ପଚାରିଲା ।

—ଅର୍ଥାତ୍ ମୁଁ ଓ ସିତାଂଶୁ ଭେଷ୍ଟକ୍‌ରେ ମୋଟର ଓ ଇଂଜନ୍‌କୁ ସଜାଡ଼ିବାକୁ ଚେଷ୍ଟା କରିବୁ । ଯେତେ ଶୀଘ୍ର ସଜଡ଼ା ଯାଇପାରେ ମଂଗଳ । ପୋପ୍‌ଭିଚ୍ କହିଲେ ।

—ହଁ, ଚେଷ୍ଟା କର । ହୁଏତ ମୋଟରଟା ସଜଡ଼ା ଯାଇପାରେ । କାରଣ ଭେଷ୍ଟକ୍ ବିନା ଆମେ ପୃଥିବୀକୁ ଫେରିବା ସଂଭବ ନୁହେଁ ।

—ଦାଦା, ସେଇଟା କ'ଣ ଠିକ୍ ହୋଇପାରିବ ନାହିଁ ? ତାହାହେଲେ ଆମକୁ ଏଇଠି ସମାଧି ନେବାକୁ ହେବ ? ମୋର ସବୁ ଆନନ୍ଦ ସରିଗଲା । ଦାଦା ହଠାତ୍ କହିଲେ—

—ଆଃ ! ତୁ କାହିଁକି ଏତେ ବ୍ୟସ୍ତ ଶୁଣେ ? ସେ ସବୁ କଥା ବୁଝିବାକୁ ଆମେ ତିନିଟା ଲୋକ ଅଛୁ । ହଁ, ଶୀଘ୍ର ଖାଇଲୁ ; ଆମେ ଆଜି ଇରିନସ୍କ ଖୋଜିବାକୁ ଯିବା ।

ଅଧଘଣ୍ଟାଏ ଭିତରେ ଆମେ ଭେଷ୍ଟକ୍‌ରୁ ଓହ୍ଲାଇ ଆସିଲୁ । ସନ୍ଧ୍ୟା ପର୍ଯ୍ୟନ୍ତ ବାହାରେ ବୁଲିବାକୁ ପଡ଼ିବ । ଏଣୁ କିଛି ସିଝା ଅଣ୍ଡା, ବିସ୍କୁଟ ଓ କଫି ଧରି ବାହାରିଲୁ । କାଲି ଫେରିଲାବେଳକୁ ଆମେ କିଛି ଦୂରରେ ଗୋଟାଏ ପର୍ବତଶ୍ରେଣୀ ଆବିଷ୍କାର କରିଥିଲୁ । ଆଜି ସେଇଠାରେ ଇରିନସ୍କ ଖୋଜିବାକୁ ଠିକ୍ କଲୁ ।

ସକାଳର ସୂର୍ଯ୍ୟକିରଣ ବେଶ୍ ଭଲ ଲାଗୁଥାଏ । ସୁଲୁସୁଲିଆ ପବନ ବହୁଥାଏ । ଘଣ୍ଟାଏ ଖଣ୍ଡେ ଯିବା ପରେ ଆମେ ଗୋଟିଏ ପର୍ବତ ପାଖରେ ପହଂଚିଲୁ । ପର୍ବତ ପାଖରେ ଏକ ସଂକୀର୍ଣ୍ଣ ଉପତ୍ୟକା ଥାଏ । ଦୁଇ ପାଖରେ ଉଚ୍ଚ ପର୍ବତ । ଆମେ ତାହା ଉପରକୁ ନ ଉଠି, ଗୋଟାଏ ଗିରିପଥରେ ଯାଇ ପର୍ବତ ସେପଟେ ଓହ୍ଲାଇଲୁ ।

ଉପତ୍ୟକାଟା ସମତଳ ହେଲେ ବି ଖାଲି ଖଣ୍ଡ ଖଣ୍ଡ ପଥରରେ ଭର୍ତ୍ତି ହୋଇଥାଏ । ନିହାତି ପଥୁରିଆ । ଦାଦା ଖଣ୍ଡେ ପଥର ଉଠାଇ ପରୀକ୍ଷା କଲେ । କହିଲେ—

—ଜଣାଯାଉଛି ଏହା ଅନେକ ବର୍ଷର ପୁରୁଣା ପାହାଡ଼ । ଏଥିରୁ ଇରନସ୍କ ମିଳିପାରେ ।

—ଆଚ୍ଛା ଦାଦା, ଇରନସ୍କ ଦେଖିବାକୁ କେମିତି ? ମୁଁ ପଚାରିଲି ।

—ସେ କଥା ମୁଁ କିମିତି କହିବି ? ପୃଥିବୀରେ ତ ଇରନସ୍କ ନାହିଁ । ଆମେ ମଂଗଳ ଗ୍ରହରେ ତ ପ୍ରଥମେ ପହଂଚିଛୁ । ଇରନସ୍କ ପାଇବା ପରେ ସିନା ଦେଖିବା ଜିନିଷଟା କେମିତି ? ଦାଦା କହିଲେ ।

—ତାହାହେଲେ ଆମେ ସେ ଧାତୁକୁ ଚିହ୍ନିବା କେମିତି ? ରିନା ପଚାରିଲା ।

ଦାଦା ଟିକେ ହସି ପକେଟରୁ କ'ଣ ଗୋଟାଏ ଯନ୍ତ୍ର ବାହାର କରି କହିଲେ—

—ରିନା, ବିଜ୍ଞାନ କ'ଣ କରି ନ ପାରିବ, ସେ କଥା ଭାବିବ ନାହିଁ । ଏଇଟା ଇରନସ୍କ ଚିହ୍ନିବା ଯନ୍ତ୍ର । ପ୍ରଫେସର୍ ପୋପ୍ଭର୍ ଏହାକୁ ଉଦ୍ଭାବନ କରିଅଛନ୍ତି । ରିନା ତ ଏହାକୁ ଦେଖିଥିବ ।

—ହଁ, ମୁଁ ପ୍ରଫେସର୍ ପୋପ୍ଭର୍ଙ୍କ ଟେବୁଲ ଉପରେ ଦେଖିଥିଲି; ମାତ୍ର ଏଇଟା ଯେ ଇରନସ୍କ ଚିହ୍ନିବା ଯନ୍ତ୍ର, ସେ କଥା ଜାଣି ନ ଥିଲି । ତେବେ ଏଥିରେ କେମିତି ଚିହ୍ନି ହେବ, ସେ କଥା କୁହନ୍ତୁ ତ ?

ଏଇ ଦେଖ—ଦାଦା ଆମ ପାଖକୁ ଆସି ନଳୀ ଯନ୍ତ୍ରଟା ଦେଖାଇ କହିଲେ, "ଏହା ମୂଣ୍ଡରେ ଗୋଟିଏ ଲେନ୍‌ସ ଲଗିଛି । ଦେଖୁଛ ତ ? ଆମେ ମୁଣ୍ଡ ହଲାଇଲୁ ।"

ପ୍ରଫେସର୍ ପୋପ୍‌ଭର୍ ଅନେକ ଗବେଷଣା ପରେ ଜାଣି-ପାରିଛନ୍ତି ଯେ ଇରିନସ୍କ ଧାତୁରୁ ଏକ ପ୍ରକାର ଅଦୃଶ୍ୟ ଆଲୋକ ବାହାରେ । ସେଇଟା ଆମ ସାଧାରଣ ଆଖିରେ ଧରା ପଡ଼ିବ ନାହିଁ । ଏ ଯନ୍ତ୍ରର ନଳୀଟା ଯଦି ଧାତୁକୁ ସ୍ପର୍ଶ କରିବ, ତେବେ ସେହି ଅଦୃଶ୍ୟ ଆଲୋକରେଖା ଲେନ୍‌ସ ଭେଦି ଭିତରକୁ ଯିବ । କାଚକୁ ଭେଦି ସେହି ଆଲୋକରେଖା ଭିତରକୁ ଗଲେ ତାର ପ୍ରକୃତି ଅନେକ ବଦଳିଯିବ । ଆଉ ଯନ୍ତ୍ର ଭିତରେ ଥିବା ଆଲୋକରେଖା ଚିହ୍ନିବା ସୂକ୍ଷ୍ମ କୃତ୍ରିମ ସ୍ନାୟୁ ପାଖରେ ସେ ଧରା ପଡ଼ିଯିବ । ଫଳରେ ଯନ୍ତ୍ର ଭିତରେ ଥିବା ଗୋଟାଏ ସ୍ଥାନରେ ଘଣ୍ଟି ବାଜି ଉଠିବ । ଏଥିରେ ଗୋଟିଏ ଛୋଟ ବୋତାମ ଅଛି । ଏହାକୁ ଟିପିଲେ ସେହି କୃତ୍ରିମ ସ୍ନାୟୁ-ଗୁଡ଼ାକ ସକ୍ରିୟ ହୋଇଉଠିବେ । ଯନ୍ତ୍ରର ଭିତରଟା ଖୁବ୍ ଛୋଟ, ଅଥଚ ଶକ୍ତିଶାଳୀ ବ୍ୟାଟେରି ଦୁଇଟା ଏଥିରେ ଅଛି ।

ପ୍ରାୟ ଦୁଇ ଘଣ୍ଟା କାଳ ଆମେ ସେ ପାହାଡ଼ ଭିତରେ ବୁଲିଲୁ । କେତେ ଗୁମ୍ଫା, କେତେ ଖାଲ ବୁଲି ବୁଲି ନସ୍ୟାନ୍ତ ହୋଇଗଲୁ । ରିନା ହଳେ ଚପଲ ପିନ୍ଧିଥିଲା । ତା ଚପଲ ଛିଣ୍ଡିଗଲା । ଝୁଣ୍ଟି ଝୁଣ୍ଟି ପାଦ ଫାଟିଗଲା । ମୋର ଆଙ୍ଗୁଠିଟାଏ ବି ଉଡ଼ିଗଲା । କିନ୍ତୁ ଇରିନସ୍କ ପାଇଲୁ ନାହିଁ । କ୍ଳାନ୍ତ ହୋଇ ମୁଁ ଓ ରିନା ଖଣ୍ଡିଏ ପଥର ଉପରେ ଯାଇ ବସିଲୁ । ସେଇ ଉପତ୍ୟକା ଭିତରେ ଗୋଟିଏ ଛୋଟ ଝରଣା ବହିଯାଉଥାଏ । ପାଣିରେ ମୁଁ ଯାଇ ଗୋଡ଼ ବୁଡ଼ାଇଲି ।

ଆଃ ! ତରତର ହୋଇ ଗୋଡ଼ କାଢ଼ି ଆଣିଲି । ପାଣି ଏତେ ଗରମ ଥିଲା ଯେ, ମୋ ଗୋଡ଼ ପୋଡ଼ିଗଲା ପରି ଲାଗିଲା । ସେଇଟା ବୋଧହୁଏ ଗୋଟାଏ ଉଷ୍ମ ପ୍ରସ୍ରବଣ ! ସୂର୍ଯ୍ୟ ମୁଣ୍ଡ ଉପରକୁ ଉଠିଲେଣି । ଗରମ ଲାଗିଲା । ଦାଦା ଟିକେ ପଛେଇ ବସି ଘଡ଼ିଆଡ଼କୁ ଲକ୍ଷ୍ୟ କଲେ । ଦିନ ସାଢ଼େ ବାରଟା । ଭୋକ କଲାଣି । ଛାଇରେ ବସି ଅଣ୍ଡା ଓ ବିସ୍କୁଟ ଖାଇଲୁ, କଫି ପିଇଲୁ । କିଛି ସମୟ ପରେ ପୁଣି ଆମର ଅନୁସନ୍ଧାନ କାର୍ଯ୍ୟ ଆରମ୍ଭ ହୋଇଗଲା ।

ଦାଦା ପାହାଡ଼ ଦେହରେ ସେ ଯନ୍ତ୍ରଟା ଲଗେଇ ପରୀକ୍ଷା କରୁଥାନ୍ତି । ଆମେ ତାଂକ ପଛରେ ଯାଉଥାଉ । ପଥର ଦେହରେ ଯନ୍ତ୍ରଟା ଲଗେଇ ପରୀକ୍ଷା କରୁ କରୁ ହଠାତ୍ ଯନ୍ତ୍ରଟା ଅତି କ୍ଷୀଣ ସ୍ୱରରେ ବାଜିଉଠିଲା । ଆମେ ଖୁବ୍ ଆଗ୍ରହରେ ପଥର କାନ୍ଥରେ ଲାଗି ଠିଆହେଲୁ । ଦାଦା ପୁଣି ଖୋଜିଲେ କେଉଁଠାରେ ଯନ୍ତ୍ରଟା ସଂକେତ ଦେଉଛି । ପରୀକ୍ଷା କରୁ କରୁ ପୁଣି ବାଜିଲା । ଦାଦା ଯନ୍ତ୍ରଟା କାଢ଼ି ଆଣିଲେ । ପର୍ବତର ଢିଖ ପଥର କାନ୍ଥ ସେଇଟା । ଏତେ ଟିକେ ଇଉରେନିୟମ କେଉଁଠି ମିଶି ରହିଛି । ତାକୁ ବା କିମିତି ଅଲଗା କରିହେବ ? ସେ ଯାଗା ଛାଡ଼ି ଆମେ ଅନ୍ୟଠାରେ ଇଉରେନିୟମର ସନ୍ଧାନ ନେଲୁ । କିଛି ସମୟ ପରେ ଗୋଟାଏ ପଥରଗଦାରେ ଇଉରେନିୟମ ଦେଖୁ ଦେଖୁ ଯନ୍ତ୍ରଟା ଖୁବ୍ ଧୀରେ ବାଜିଲା । ଦାଦା ତାଙ୍କ ଯନ୍ତ୍ରଟାକୁ ସେଇଠି ଧରି ରଖିଲେ । କ୍ରମାଗତ ଭାବରେ ଘଣ୍ଟି ଶବ୍ଦ ଶୁଣାଗଲା । ମୁଁ ଓ ରିନା ଗୋଟାଏ ପଥରକୁ ଗଡ଼େଇ ପକେଇଲୁ । ଗୋଟାଏ ଅଣ୍ଡାକାର ପଦାର୍ଥ ଆଖିରେ ପଡ଼ିଲା । ଦାଦା ସେ ପଥରଟା ଉପରେ ଯନ୍ତ୍ରକୁ ଦେଖାଉ ଦେଖାଉ ଘଣ୍ଟି ଝଣ୍ ଝଣ୍ କରି ବାଜିଉଠିଲା । ଏତେ ସମୟ ପରେ ଇଉରେନିୟମର ସନ୍ଧାନ ମିଳିଲା ।

ଆମେ ଖୁସି ହୋଇଗଲୁ । ଏଥର କୁବେର ପାଲଟିଯିବାକୁ ବେଶି ଦିନ ଲାଗିବ ନାହିଁ ।

ଇରେନସ୍କକୁ ମୁଁ ହାତରେ ଉଠାଇବାକୁ ଯାଉଥିଲି, ମାତ୍ର ଦାଦା ମନା କଲେ । ସେ ପକେଟରୁ ଗୋଟାଏ ଫ୍ଲେଟ କାଠ ଡବା ବାହାର କଲେ । ଗୋଟାଏ ଚମୁଟାରେ ତାକୁ ଉଠାଇ ଡବାରେ ରଖିଲେ । କାରଣ ତାକୁ ଛୁଇଁଲେ ମଣିଷର କ୍ଷତି ହେବା ଆଶଂକା ଅଛି ବୋଲି ପୋପ୍‌ଭର୍ ଦାଦାଂକୁ ସାବଧାନ କରି ଦେଇଥିଲେ । ଆମେ ନିରୀକ୍ଷଣ କରି ଦେଖୁଥାଉ । କୁକୁଡ଼ା ଅଣ୍ଡା ପରି ତାହା ଚିକ୍‌କଣ ଓ ଶୁଭ୍ର । ବେଶ୍ ସ୍ନିଗ୍ଧ ଦେଖା ଯାଉଥାଏ । ଦାଦା ଗୋଟାଏ ପଥର ଉପରେ ବସି ସିଗାରେଟ୍ ଟାଣୁ ଟାଣୁ କହିଲେ—

—ଯାହାହେଉ ଆମେ ଗୋଟିଏ ଖୁବ୍ ମୂଲ୍ୟବାନ୍ ଜିନିଷ ଆବିଷ୍କାର କରିପାରିଲୁ । ପୋପ୍‌ଭର୍ ଏହାକୁ ଦେଖି ଖୁବ୍ ଖୁସି ହୋଇଯିବେ ନିଶ୍ଚୟ ।

—କିନ୍ତୁ ଇରେନସ୍କରୁ କେମିତି ସୁନା ପାଇବା, ସେ ସୂତ୍ର ତ ପୂର୍ବାପୂରି ଆବିଷ୍କାର କରିପାରି ନାହାଂନ୍ତି । ରିନା କହିଲା ।

—ସେଥିରେ କିଛି ଯାଏ ଆସେ ନାହିଁ । ସେ ନିକଟରେ ତାକୁ ବାହାର କରି ପାରିବେ । ଆମେ ତ ମୂଳ ଜିନିଷଟା ପାଇଗଲୁ । ଏଣିକି ବାକି ସବୁ କାମ ସହଜ ହୋଇଯିବ ।

ଏହାପରେ ଆମେ ଘୂରିଆଡ଼େ ବୁଲିବୁଲି କରି ଫେରିଲୁ । ଡୋଷ୍ଟକ୍‌ରେ ପହଞ୍ଚିଲାବେଳକୁ ଠିକ୍ ସଂଧ୍ୟା । ପୋପ୍‌ଭର୍ ଓ ସିତାଂଶୁ ଇଂଜିନ୍ ପାଖରେ ଦୁଇଟା ଚଉକି ପକାଇ ବସିଥାନ୍ତି । ଦାଦା କହିଲେ—

—ପୋପ୍‌ଭିଚ୍, ତୁମକୁ ଗୋଟିଏ କମନୀୟ ଉପହାର ଦେବ ।

—କ'ଣ ଇରିନସ୍କ ? ପୋପ୍‌ଭିଚ୍ ମୁହଁ ବୁଲାଇ ପଚାରିଲେ ।

—ହଁ

ପୋପ୍‌ଭିଚ୍ ସଂଗେ ସଂଗେ ଚଉକି ଛାଡ଼ି ଦୌଡ଼ି ଆସିଲେ । କହିଲେ, "ତୁମେ ଇରିନସ୍କ ପାଇଲ ଚନ୍ଦ୍ରଶେଖର ? କାହିଁ, ଦେଖି ?" ଦାଦା ପକେଟରୁ ଡବାଟା କାଢ଼ି ମନ୍ତ୍ରସହ ତାଂକ ହାତକୁ ବଢ଼ାଇ ଦେଲେ । ପୋପ୍‌ଭିଚ୍ ଖୁବ୍ ଖୁସି ହୋଇ ତାହା ଖୋଲି ଇରିନସ୍କକୁ ନିରୀକ୍ଷଣ କରିବାକୁ ଲଗିଲେ ।

—କିନ୍ତୁ ଆଜି ଦିନପାକ ତମେ କ'ଣ କରିଛ, ମତେ କହିବନି ? ଦାଦା ପଚାରିଲେ ।

ପୋପ୍‌ଭିଚ୍‌ଙ୍କର ସବୁ ଆନଂଦ ମରିଗଲା ଯେମିତି । ସେ କହିଲେ—

—ଗୋଟାଏ ଇଂଜିନ୍‌କୁ ମରାମତି କରିବା ଛଡ଼ା କିଛି କରି ପାରିନୁ । ତୁମେ ଆମଠୁ ଖୁବ୍ ବେଶି ସଫଳତା ହାସଲ କରି ପାରିଛ ।

—ମୋଟର ? ଦାଦା ପଚାରିଲେ ।

—ନା, ସେଇଟା ଆଉ କାମ ଦେବନି । ପୂରା ଖରାପ ହୋଇଯାଇଛି । ତା' ଛଡ଼ା ଆମ ବିଦ୍ୟୁତ୍ ବ୍ୟାଟେରୀରୁ ବି ଅଧିକାଂଶ ନଷ୍ଟ ହୋଇଯାଇଛି ।

—ରେଡିଓ-ଟେଲିଗ୍ରାଫ୍ ?

—ନା, ସେଇଟାକୁ ବି ସଂପୂର୍ଣ୍ଣ ମରାମତି କରି ପାରିନୁ । କିଛି କାମ ଦେଇପାରେ । ତାହା ସାହାଯ୍ୟରେ ପୃଥିବୀ ସହ ସଂପର୍କ

ସ୍ଥାପନ କରିବା ଅସମ୍ଭବ । ଦାଦା କିଛି ସମୟ ନୀରବ ରହି କହିଲେ—

—ତାହାହେଲେ ଆମେ ଯଥାସମ୍ଭବ କମ୍ ବିଦ୍ୟୁତ୍ ଖର୍ଚ୍ଚ କରିବା । ଖାଦ୍ୟପଦାର୍ଥ ଜଗି ରଖି ଖାଇବା । ଅନ୍ତତଃ ଯେତେଦିନ ସମ୍ଭବ, ମଂଗଳରେ ବଂଚି ରହିବାକୁ ଚେଷ୍ଟା କରିବା । ରେଡିଓ-ଟେଲିଗ୍ରାଫ୍‌ଟାକୁ ମରାମତି କରି ତା ସାହାଯ୍ୟରେ ଆମର ଆବିଷ୍କୃତ ତଥ୍ୟସବୁ ପଠାଇ ଦେଲା ପରେ ମଂଗଳରେ ମରିବାକୁ ମୋର ଆପତ୍ତି ନାହିଁ । ମୋର ସବୁଠୁ ବଡ଼ ଦୁଃଖ ହେଲା, ଆମ ଆବିଷ୍କୃତ ତଥ୍ୟସବୁ ପୃଥିବୀରେ ଅଜଣା ରହିଯିବ । ହଠାତ୍ ଦାଦା ବେଶ୍ ଉତ୍ସାହରେ କହିଉଠିଲେ—

—ଛାଡ଼, ମରିବାକୁ ତ ଆମର ଜନ୍ମ । ସେଇ ବହୁ ପୁରୁଣା ପୃଥିବୀରେ ନ ମରି ବରଂ ଏଠାରେ ମରିବାରେ ବେଶ୍ ଆନଂଦ ଅଛି । ନିନାକୁ କହିଦିଅ······ସେ ନିଜେ ଡାକିଲେ—ନିନା ! ନିନା !

ନିନା ପାଭ୍‌ଲୋଭ୍‌ନା ଆସିଲା । ଦାଦା ତାକୁ କହିଲେ—

—ନିନା, ଆଜିଠୁ ଆମେ ମଂଗଳରେ ରହିଯିବା । ଆଉ ପୃଥିବୀକୁ ଫେରିବା ନାହିଁ । ତୁମେ ପରା ଏଠି ରହି ଯିବାକୁ ଚାହିଁଥିଲ ?

—ଏଁ···ଆଉ ଲେନିନ୍‌ଗ୍ରାଡ୍ ଯିବାନି ? ନିନା ଆଶ୍ଚର୍ଯ୍ୟ ହୋଇ ପଚାରିଲା । ସେଇ ନିନା ସେତେବେଳେ ଖୁସି ହୋଇ କହି ପକାଇଥିଲା, "ଜନ୍ମମାଟି ମାଆ ! ପୃଥିବୀର ମାୟା ଛାଡ଼ି ହେବ କେମିତି ?"

—ନା, ଆଉ ଫେରିବା ନାହିଁ ।

—ତୁମେ ସବୁ ରହିବ ?

—ହଁ, ଦାଦା ହସି ହସି ଉତ୍ତର ଦେଲେ ।

—କାହିଁକି ? ନିନା ଆତଂକିତ ହୋଇପଡ଼ିଲା । ଏତିକିବେଳେ ପୋପ୍‌ଭିର୍ ହସି ହସି କହିଲେ—

—ନା, ମ । ଆମେ ପୃଥିବୀକୁ ଫେରିବା, କିନ୍ତୁ ଅନେକ ଡେରିରେ । ତୁମେ ଆଜିଠାରୁ ହ୍ୱୋଷ୍ଟକ୍ ଭିତରେ ବୋବେଇ ନ କରି ବାହାରେ ମଂଗଳ ଗ୍ରହ ଉପରେ କରିବ ।

—ହଉ, ଭଲ କଥା । ଏତକ କହି ମୋତେ ଡରେଇ ଦେଲେଣି ।

ଆମେ ତା କଥାରେ ହସିଉଠିଲୁ ।

## ବିପଦ ଘନେଇଲା

ଏହାପରେ କିଛି ଦିନ ଚୁଲିଗଲା । ଆମେ ସେ ମୋଟର ବା ଇଂଜିନ୍ ବିଷୟରେ କିଛି ଚିନ୍ତା କଲୁ ନାହିଁ । କାରଣ ଚିନ୍ତା କଲେ ବି ଉପାୟ ନାହିଁ । ଖାଲି ମନ ଖରାପ କରିବା ହିଁ ସାର ହେବ । ବରଂ କିଛିଦିନ ମଂଗଳକୁ ପର୍ଯ୍ୟବେକ୍ଷଣ କରିବାରେ କଟେଇଲେ ବେଶ୍ ଭଲ ହେବ । ଦାଦା ସିତାଂଶୁଙ୍କୁ ସାହସ ଦେଇ କହୁଥାନ୍ତି, "ଦେଖ, ଯଦି ସେ ଲୁହାଫ୍ଲେଟ୍‌ଟାକୁ କାମରେ ଲଗେଇ ହେବ, ତାହାହେଲେ ଯାଇ ଆମେ ପୃଥିବୀକୁ ଫେରି ପାରିବା । ଏଣୁ ମୋଟର ଓ ଇଂଜିନ୍‌ଗୁଡ଼ାକୁ ସଜାଡ଼ି ଦିଅ ।" ସିତାଂଶୁ ଭଲରୂପେ ଜାଣିଥାନ୍ତି ଯେ ହ୍ୱୋଷ୍ଟକ୍ ଆଉ କେବେହେଲେ ପୃଥିବୀକୁ ଫେରି

ପାରିବ ନାହିଁ । ଏଇ ଛଅ ଜଣ ମହାଶୂନ୍ୟ ଯାତ୍ରୀଙ୍କର ପୃଥିବୀକୁ ଫେରିବା ବାଟ ସବୁଦିନ ପାଇଁ ବନ୍ଦ ହୋଇଯାଇଛି ।

ଦିନ ପରେ ଦିନ ଗଡ଼ି ଯାଉଥାଏ । ମଂଗଳର ଆକାର ପ୍ରାୟ ପୃଥିବୀ ସହ ସମାନ ହୋଇଥିବାରୁ ଏଠାରେ ଦିନଟା ପ୍ରାୟ ପୃଥିବୀର ଦିନ ସହ ସମାନ ହୋଇଥାଏ । ଆମେ ବିଭିନ୍ନ ଦଳରେ ମଂଗଳପୃଷ୍ଠ ଅନୁସନ୍ଧାନ କରି କେତେକ ଫଟୋ ଉଠାଇ ଆଣୁ । ନାନା ତଥ୍ୟ ବି ସଂଗ୍ରହ କରୁ । ଦାଦା ଓ ପ୍ରୋଫେସର୍ ସେ ତଥ୍ୟ ଉପରେ ନାନା ଆଲୋଚନା କରି ମଂଗଳର ଏଇ ଅଂଶଟାର ଗୋଟିଏ ମୋଟାମୋଟି ବିବରଣୀ ଲେଖୁଥାନ୍ତି । ଆମେ ବେଳେ ବେଳେ ରାତିରେ ବି ବାହାରେ ବୁଲୁ । ମାତ୍ର ଖୁବ୍ ଶୀଘ୍ର ଫେରିବାକୁ ପଡ଼େ । କାରଣ ରାତିର ସେତିକି ପ୍ରବଳ ଥଣ୍ଡାକୁ ପୃଥିବୀର ଜଣେ ସାଧାରଣ ମଣିଷ ସହିବା ଅସମ୍ଭବ । ଆମେ ଅନୁଭବ କଲୁ, ମଂଗଳ ଗ୍ରହରେ ଥଣ୍ଡା ଦିନକୁ ଦିନ ବଢ଼ିବାରେ ଲାଗିଛି । ଗୋଟିଏ ବିଚିତ୍ର କଥା ହେଲା, ଆମେ ଯେତେ ଖୋଜିଲେ ମଧ୍ୟ ମଂଗଳରେ ଚଳନ୍ତା ପ୍ରାଣୀର ସନ୍ଧାନ ପାଇଲୁ ନାହିଁ । ଖାଲି ଉଦ୍‌ଭିଦଜଗତ ଛଡ଼ା ଆଉ ଆଖିରେ କିଛି ପଡ଼ିଲା ନାହିଁ । ପ୍ରକୃତିର ମୁକୁଳା ପସରା ଉପରେ ମଣିଷର ହାତତିଆରି ଜିନିଷ ବି କିଛି ଦେଖିବାକୁ ମିଳିଲା ନାହିଁ । ତେଣୁ ଦାଦା ଆମକୁ ଉପଦେଶ ଦେଲେ—ଆମେ ଫସିଲ୍ ଖୋଜିବାରେ ବିଶେଷ ଧ୍ୟାନ ଦେବା ଉଚିତ । କାରଣ ସେ କହୁଥିଲେ, ମଂଗଳ ଗ୍ରହରେ ଦିନେ ମଣିଷ ବା ଉନ୍ନତ ଜୀବଜନ୍ତୁ ଥିଲେ । ମାତ୍ର କାଳକ୍ରମେ କୌଣସି କାରଣରୁ ହୁଏତ ବରଫଯୁଗର ପ୍ରଚଣ୍ଡ ବରଫପାତ ଫଳରେ ଜୀବଜଗତ ଲୋପ ପାଇଯାଇଛି । ଫସିଲ୍‌ରୁ ଏହି ପ୍ରମାଣଟା ଅନ୍ତତଃ ମିଳିବ । କୌଣସି ଜୀବ ମାଟିତଳେ ପୋତିହୋଇ ମରିଯାଇଥିଲେ କିମ୍ବା ମରିଗଲା ପରେ ତା ଉପରେ

ମାଟି ଗଦା ହୋଇଯାଇଥିଲେ କାଳକ୍ରମେ ସେ ମାଟି ଯେତେବେଳେ ଝାଣ ହୋଇଯାଏ, ସେଥିରେ ଉକ୍ତ ଜୀବର ଗ୍ରୁପ ରହିଯାଏ । ତାହାକୁ ଫସିଲ୍ କହନ୍ତି । ପରେ କୌଣସି ଆନ୍ଦୋଳନ ଫଳରେ ବା ବର୍ଷା ଫଳରେ ସେଇ ଗ୍ରୁପ ଥିବା ପ୍ଲେଟ୍‌ଗୁଡ଼ିକ ଉପରକୁ ଚାଲି ଆସିପାରେ । ଫସିଲ୍ ଅଧ୍ୟୟନ କରି ସେ ବିଷୟରେ ପଣ୍ଡିତ ଲୋକମାନେ ଠିକ୍ କରିପାରନ୍ତି କେତେ ବର୍ଷ ତଳେ ଏହି ଫସିଲ୍ ସୃଷ୍ଟି ହୋଇଥିଲା ଓ କେତେ ବର୍ଷ ତଳେ ସେଇଠି ଜନବସତି ବା ଜୀବଜନ୍ତୁମାନେ ବାସ କରୁଥିଲେ । ପ୍ରଫେସର୍ ଚୋପ୍‌ଭିର୍ ଓ ନିନା ପାଭ୍‌ଲୋଭ୍‌ନା ଅଧିକାଂଶ ସମୟରେ ଭେଷ୍ଟିକ୍‌ରେ ଥାଆନ୍ତି । ବାକି ଆମେ ଚାରି ଜଣ ବିସ୍ତୃତ ଅଞ୍ଚଳରେ ପର୍ଯ୍ୟବେକ୍ଷଣ କାର୍ଯ୍ୟ ଚଳାଉ ଥାଉ । ସିତାଂଶୁ ବେଳେ ବେଳେ ଯନ୍ତ୍ର ସଜାଡ଼ିବାରେ ମନ ଦିଅନ୍ତି । ଯାହା କିଛି ରୋଷେଇ କରିବା ଦରକାର, ନିନା ମଂଗଳପୃଷ୍ଠରେ କରେ । ଆମେ ତାକୁ ଶୁଖିଲା କାଠ ଯୋଗାଇ ଦେଉ ।

ଦାଦା କହନ୍ତି, ଆମେ ମଂଗଳର ଉତ୍ତର ଗୋଲାର୍ଦ୍ଧରେ ଅବତରଣ କରିଛୁ । ଦକ୍ଷିଣ ଆଡ଼କୁ ହୁଏତ ଆଉ କିଛି ଉନ୍ନତ ଉଦ୍‌ଭିଦ ବା ପ୍ରାଣୀର ସନ୍ଧାନ ମିଳିପାରେ । ମାତ୍ର ସେ ବିଷୟରେ କେହି ନିଶ୍ଚିତରୂପେ କିଛି କହିପାରୁ ନ ଥାନ୍ତି । ସବୁ ବୈଜ୍ଞାନିକଙ୍କ ପରି ଦାଦା ମଧ୍ୟ ଖୁବ୍ ଆଶାବାଦୀ । ସେ କହୁଥାନ୍ତି, "ଆମେ ଆଉଥରେ ମଂଗଳ ଗ୍ରହକୁ ଆସିଲାବେଳେ ଗୋଟାଏ ଜିପ୍‌ଗାଡ଼ି ଆଣିବା ଯେ, ମଂଗଳ ଗ୍ରହର ଅଧିକାଂଶ ଅଂଚଳ ପର୍ଯ୍ୟବେକ୍ଷଣ କରିପାରିବା । ଏଇ ଥର ପୃଥିବୀକୁ ଫେରିବାର ତ ଆଶା ନାହିଁ । ଆଉ ଦେଉଳ ତୋଳି ପ୍ରତିଷ୍ଠା ପାଇଁ କାହାକୁ ଡାକିବା ?" ଦାଦାଙ୍କର ଏହିସବୁ କଥାରେ ଆମେ ବେଳେ ବେଳେ ଖୁବ୍ ଆଶ୍ଚର୍ଯ୍ୟ ହୋଇଯାଉ । ରାତି ହେଲେ ଦିନଯାକ ସଂଗୃହୀତ ତଥ୍ୟର

ଆଲୋଚନା ଦାଦା ଓ ପୋପ୍‌ଭର୍ କରନ୍ତି । ଆଲୋଚନାରେ ସେମାନେ ଏତେଦୂର ମଜ୍ଜି ଯାଆନ୍ତି ଯେ, ଖିଆପିଆ ଭୁଲି ଯାଆନ୍ତି । ଦିନେ ପ୍ରଫେସର୍ ପୋପ୍‌ଭର୍ ସିତାଂଶୁଙ୍କୁ କହୁଥିଲେ, ଏଠାର ଚିତ୍ତଳ ଗଠନରୁ ଜଣାପାଉଛି, ଶୀତକାଳରେ ମଂଗଳ ଗ୍ରହରେ ଅତ୍ୟଧିକ ବରଫ ପଡ଼େ । ଏମିତି କି ମାଟି ଉପରେ ଗୋଟାଏ ଗୋଟାଏ ସ୍ଥାନରେ ଶହ ଶହ ଫୁଟ ଉଚ୍ଚତାର ବରଫ ଜମି ଯାଏ । ଏଣୁ ଶୀତକାଳ ପୂର୍ବରୁ ଆମକୁ ମଂଗଳ ଛାଡ଼ିବାକୁ ପଡ଼ିବ ।

ଆମେ ମଂଗଳରେ ପହଂଚିବାର ଦଶ ଦିନ ପରେ ଦିନେ ଉପରବେଳା ପ୍ରଫେସର୍ ପୋପ୍‌ଭର୍, ଦାଦା ଓ ମୁଁ ସେଇ ଶ୍ଳେଟ ହ୍ରଦଟା ପାଖରେ ବସି ଗପସପ କରୁଥାଉ । ଅନେକ କଥା ଆଲୋଚିତ ହେଉଥାଏ । ହଠାତ୍ ପୋପ୍‌ଭର୍ ଉଠିଯାଇ ପାଖରେ ଥିବା ଗୋଟିଏ ଧଳା ଫୁଲଗଛ ଉପାଡ଼ି ଆଣିଲେ । ପୋପ୍‌ଭର୍ ଗଛଟାକୁ ଏପଟ-ସେପଟ କରି କହିଲେ—

—ଏଇ ଗଛଟା ଉପରେ ମୁଁ ଗତ କେତେଦିନ ହେଲା ଗବେଷଣା ଚଳାଇଛି । ମୁଁ ଦେଖିଲି, ଏ ଫୁଲର ଗୋଟିଏ ବିଚିତ୍ର ଗନ୍ଧ ଅଛି; ଆଉ ସେଇ ଗନ୍ଧ ମଣିଷ ଉପରେ କିଛି ପ୍ରଭାବ ପକାଇ ପାରେ ।

ମୁଁ ବୁଝିପାରିଲି ନାହିଁ ଗୋଟାଏ ଫୁଲର ଗନ୍ଧ ମଣିଷ ଉପରେ କି ପ୍ରଭାବ ପକାଇ ପାରେ । ସେ କଥା ପଚାରିଲି । ପୋପ୍‌ଭର୍ କହିଲେ—

—ମୁଁ ଠିକ୍ ଜାଣିନି । ତେବେ ଏହାର ନିଶ୍ଚୟ କିଛି ଗୋଟାଏ ମଣିଷ ଉପରେ ପ୍ରଭାବ ଅଛି ।

—ଆଚ୍ଛା, ତାହାହେଲେ ଏହାର ଗୋଟିଏ କିଛି ନାଁ ଦିଆଯାଉ । ରିନା ପ୍ରସ୍ତାବ ଦେଲା । ନିନା ହସି ହସି କହିଲା—

—ମୁଁ କହୁଛି ଏହାର ନାମ ସୁପ୍ନୋଭ୍ ଦିଆଯାଉ । ନିନାର ପ୍ରସ୍ତାବ ଗ୍ରହଣ କରାଗଲା । ଆମେ ଦେଖିଲୁ ସୁପ୍ନୋଭ୍‌ର ପତ୍ରଗୁଡ଼ାକ ଖୁବ୍ ଚଟକା ଓ ଆଗ ଆଡ଼କୁ ସରୁ । ତାର ଫୁଲଟା ଖୁବ୍ ବଡ଼ । ମୁଁ ପଚାରିଲି—

—ଆଚ୍ଛା ପ୍ରଫେସର୍, ମଂଗଳରେ ଶୀତକାଳ କେବେ ଆସେ ? ଏବେ କ'ଣ ଗ୍ରୀଷ୍ମକାଳ ସରି ଆସିଲାଣି ?

—ହଁ, ମଂଗଳରେ ଶୀତକାଳର ପ୍ରାଧାନ୍ୟ ବେଶି । ଶୀତ-କାଳରେ ଏତେ ଥଣ୍ଡା ହୁଏ ଯେ, ପୃଥିବୀର ମେରୁ ଅଂଚଳରେ ବି ଏତେ ଥଣ୍ଡା ହୁଏନା । ଆଉ ମଂଗଳର ମେରୁ ଅଂଚଳ ବର୍ଷର ବାର ମାସ ଜମାଟବନ୍ଧା ବରଫରେ ପୂର୍ଣ୍ଣ । ଏଠି ବସନ୍ତ ଓ ଶରତ ଆଦି ଋତୁର ଚିହ୍ନ ନାହିଁ । ଖାଲି ଗ୍ରୀଷ୍ମ ଓ ଶୀତ । ଆଉ ଦୁଇ ସପ୍ତାହ ଭିତରେ ଆମ ଏ ଅଞ୍ଚଳକୁ ଶୀତ ମାଡ଼ି ଆସିବ । ଉତ୍ତର ମେରୁରୁ ବରଫ ମାଡ଼ି ଆସିଲାଣି । ତିନି ଋତୁର ମାସ ଲେଖାଏଁ ଗ୍ରୀଷ୍ମ ଓ ଶୀତ ଗୋଟାକ ପରେ ଗୋଟାଏ ବର୍ଷସାରା ଲାଗିରହୁଥାଏ ।

—ଆଃ ! ଏ କଥା ଶୁଣୁ ଶୁଣୁ ମୁଁ ତ ଶୀତରେ ଥରିବାକୁ ଆରମ୍ଭ କଲିଣି । ବାପ୍‌ରେ ! ଏତେ ଥଣ୍ଡାରେ ମଣିଷ ବଂଚିବ କେମିତି ? ତା ପୂର୍ବରୁ ଚାଲ ପୃଥିବୀକୁ ପଳାଇବା । ନିନା କହିଲା ।

—ନା ନା, ଏତେ ଶୀଘ୍ର ଆମେ ମରିଯାଉ ନାହୁଁ । ଆମ ମହାକାଶ ଯାନରେ ବ୍ୟାଟେରୀଗୁଡ଼ିକ ଥିବା ପର୍ଯ୍ୟନ୍ତ ଆମେ ବେଶ୍ ଆରାମରେ ରହି ପାରିବା । ଆଉ ପୃଥିବୀକୁ ଫେରିବା ନ ଫେରିବା ତ ମୋଟର ଉପରେ ନିର୍ଭର କରେ ।

ଏମିତି କଥାବାର୍ତ୍ତା କରୁଛୁ, ହଠାତ୍ ଦେଖିଲୁ ଦାଦା ଅନେକ ଦୂରରୁ ଖୁବ୍ ଜୋର୍‌ରେ ଦୌଡ଼ି ଆସୁଛନ୍ତି । ମୁଣ୍ଡରେ ଟୋପି ନାହିଁ, କୋଟ୍‌ର ବୋତାମ ଫିଟିଯାଇ ପବନରେ ଉଡ଼ୁଛି । ମୁଣ୍ଡର ବାଳଗୁଡ଼ାକ ବି ଫୁର୍ ଫୁର୍ ଉଡ଼ୁଛି । ସେ ଖୁବ୍ ବ୍ୟସ୍ତ ହୋଇ ପ୍ରାଣ ବିକଳରେ ଦଉଡ଼ି ଆସୁଛନ୍ତି । ଆମେ ଆଶ୍ଚର୍ଯ୍ୟ ହୋଇ ଠିଆ ହୋଇଗଲୁ । ଦାଦା ପ୍ରାୟ ଶହେଶ ହାତ ଦୂରରୁ ପାଟି କଲେ—

—ପୋପ୍‌ଭିଚ୍, ଶ୍ୟାମଳେନ୍ଦୁ, ତୁମେ ସବୁ ହୋଷ୍ଟେଲ୍‌କୁ ଦୌଡ଼ି ଚାଲ । ଆଉ ଅପେକ୍ଷା କରିବାର ବେଳ ନାହିଁ । ଶୀଘ୍ର, ଖୁବ୍ ଶୀଘ୍ର । ସିତାଂଶୁ ଓ ରିନାକୁ ଖବର ଦେଇ ତୁମ ପାଖକୁ ଖବର ଦେବାକୁ ଦୌଡ଼ି ଆସିଲି । ମୁଁ ପଚାରିଲି—

—କଥା କ'ଣ ? ଏମିତି ତରତର କାହିଁକି ?

ଦାଦା କିଛି ନ କହି ଉତ୍ତର ଦିଗକୁ ଆଙ୍ଗୁଠି ଦେଖାଇ ଦେଲେ । ଆମେ ଦେଖିଲୁ ଏକ ବିରାଟ ଘନ କୁହୁଡ଼ିର ମେଘ ଆମରି ଆଡ଼କୁ ମାଡ଼ି ଆସୁଛି । ଆମ ଆଖି ଆଗରେ ଫଗେ ଫଗେ ଗୋଟିଏ ପର୍ବତ ଶୃଙ୍ଗ ଲୁଚିଗଲା । ସେହି ମେଘ ଖୁବ୍ ବେଗରେ ମାଡ଼ି ଆସୁଥାଏ । ତାହା ଆମଠାରୁ ପ୍ରାୟ ଦୁଇ ମାଇଲ ଦୂରରେ ଥାଏ । ହୋଷ୍ଟେଲ୍‌ର ଦୂରତା ଆମଠାରୁ ଗୋଟାଏ ମାଇଲରୁ ବେଶି ହେବ ନାହିଁ ।

କୁହୁଡ଼ି ଆସୁଛି ତ ଆସୁ । ସେଥିପାଇଁ ଏତେ ଚିନ୍ତାଆ ହେବା ଦରକାର କ'ଣ ? ମୁଁ ଏ କଥା ଆଦୌ ବୁଝି ପାରିଲି ନାହିଁ । ଦାଦାଙ୍କ କଥା ମାନି ଆମେ ଦୌଡ଼ିଲୁ । ଆମେ ଏକା ଥିଲେ ଖୁବ୍ ଜୋର୍‌ରେ ଦଉଡ଼ି ପଳାଇ ଯାଇଥାନ୍ତୁ, କିନ୍ତୁ ବିଚାରି ନିନା

ଆମ ସହିତ ଆଦୌ ଦୌଡ଼ି ପାରୁ ନ ଥାଏ । ସେଥିପାଇଁ ତା ଲାଗି ଅପେକ୍ଷା କରିବାକୁ ପଡ଼ିଲା ।

ବାୟୁମଣ୍ଡଳ ଅସ୍ୱାଭାବିକ ଭାବରେ ଥଣ୍ଡା ହୋଇଆସିଲା । ଆକାଶରୁ ସୂର୍ଯ୍ୟ ଲୁଚି ନ ଥାଏ । ତଥାପି ଖୁବ୍ ଥଣ୍ଡା ଲାଗିଲା । ସେଇ କୁହୁଡ଼ି ମେଘ ଯୋଗୁଁ ଯେ ଏ କଥା ହେଲା, ମୁଁ ବୁଝିପାରିଲି । ମାତ୍ର ଏ କୁହୁଡ଼ି କ'ଣ ପ୍ରକୃତିରେ କୁହୁଡ଼ି ? କୁହୁଡ଼ି ଯୋଗୁଁ ଏମିତି ଥଣ୍ଡା ହେବା କଥା ମୁଁ କେବେ ଜାଣି ନ ଥିଲି । ତା' ଛଡ଼ା କୁହୁଡ଼ି ପୃଥିବୀରେ ତ ଏମିତି ପବନ ସାଥିରେ ଉଡ଼ି ବୁଲେନା । ଦାଦାଙ୍କୁ ପଚାରିଲି । ଦାଦା ସେମିତି ଦୌଡ଼ୁ ଦୌଡ଼ୁ କହିଲେ—

—ମୁଁ ଆଗରୁ ଏ କଥା ଆଶଙ୍କା କରୁଥିଲି । ଶୀତକାଳ ଯେ ଏତେ ଶୀଘ୍ର ଆସିଯିବ, ମୁଁ କଳ୍ପନା କରିପାରି ନ ଥିଲି । ମେରୁ ଅଂଚଳରୁ ଖୁବ୍ ଥଣ୍ଡା ପବନ ଯେତେବେଳେ ବରଫକଣା ସହିତ ସମତଳ ଅଂଚଳ ଆଡ଼କୁ ଉଡ଼ିଆସେ, ଅପେକ୍ଷାକୃତ ଅଧିକ ଗରମ ଜଳବାୟୁର ସଂସ୍ପର୍ଶରେ ଆସି ତାହା କୁହୁଡ଼ିରେ ପରିଣତ ହୁଏ । ଏଇ କୁହୁଡ଼ି ଯେଉଁ ଅଂଚଳ ଦେଇ ବହିଯାଏ ସେଠାରେ ପ୍ରବଳ ଥଣ୍ଡା ଅନୁଭୂତ ହୁଏ । ଶୀତକାଳ ଆସିବା ପୂର୍ବରୁ ଏହି କୁହୁଡ଼ି-ବାହିନୀ ଅପେକ୍ଷାକୃତ ଅଧିକ ଗରମ ଅଂଚଳକୁ ଆକ୍ରମଣ କରିଥାନ୍ତି । ଦେଖୁଛୁ, କେତେ ଜୋର୍‌ରେ କୁହୁଡ଼ି ମାଡ଼ି ଆସୁଛି ? ନନାକୁ ସାଂଗରେ ନେଇ ଦୌଡ଼ୁଥାଅ । ଖୁବ୍ ଶୀତ କଲାଣି । ପଛକୁ ଚାହିଁ ଦେଖିଲି ମେଘ ପ୍ରାୟ ମାଇଲେ ବାଟ ଆଗେଇ ଆସିଲାଣି । ନନା ଦୌଡ଼ି ପାରୁ ନ ଥାଏ । ପୋପ୍‌ଭର୍ ନନାର ହାତ ଧରିଥାନ୍ତି । ସେ ବିଚାରୀ ପ୍ରାଣ ବିକଳରେ ଦୌଡ଼ୁଥାଏ । ଦୌଡ଼ୁ ଦୌଡ଼ୁ ହଠାତ୍ ଝୁଣ୍ଟି ପଡ଼ିଲା । ପୋପ୍‌ଭର୍ ଓ ମୁଁ ତାକୁ ଉଠାଇ ନେଲୁ । ଦାଦା ଆମକୁ ସାବଧାନ କରିଦେଇଥାନ୍ତି, କୌଣସି ପ୍ରକାରେ ପାଦ

ଚଳେଇ ରଖିବାକୁ ପଡ଼ିବ । ପଡ଼ିଗଲେ କମ୍ବା ବସି ପଡ଼ିଲେ ଦେହର ସବୁ ଅଂଶ ଥଣ୍ଡାରେ କୋଳ ମାରିଯିବ, ଆଉ ଉଠିବା ଅସମ୍ଭବ ହୋଇପଡ଼ିବ । ଏଣୁ ପ୍ରବଳ ଥଣ୍ଡାରେ ସୁଦ୍ଧା ଆମେ ଆଗେଇ ଯାଉଥାଉ । ଆଉ ଅଧଘଣ୍ଟାଏ ଭିତରେ ଆମେ କୁହୁଡ଼ି ଭିତରେ ପଡ଼ିଯିବା । ଏଣୁ କୁହୁଡ଼ିକୁ ଟପିଯିବା ଆମ ପକ୍ଷରେ ଅସମ୍ଭବ ।

ଆମେ ପ୍ରାୟ ଅଧ ମାଇଲ ବାଟ ଦଉଡ଼ି ଆସିବା ପରେ କୁହୁଡ଼ି ଢେର ଭିତରେ ପଡ଼ିଗଲୁ । ସାଙ୍ଘାତିକ ଥଣ୍ଡାରେ ମୋ ଗୋଡ଼ ହାତ ଅବଶ ହୋଇ ଆସିଲା । ଆଉ ପାଦ ଚଳାଇବା ଅସମ୍ଭବ । ମାତ୍ର ଦାଦା ପାଟି କରୁଥାନ୍ତି—କେହି ବସିପଡ଼ ନାହିଁ ବା ଠିଆ ହୁଅନାହିଁ, କୌଣସି ପ୍ରକାରେ ଚାଲ । ଆମେ ସମସ୍ତେ ହାତ ଧରାଧରି ହୋଇ ଚାଲିଥାଉ । ଓଃ ! ଥଣ୍ଡାରେ ଆଙ୍ଗୁଠିଗୁଡ଼ାକ ବଙ୍କା ହୋଇଆସିଲା । କିନ୍ତୁ ଦେହଟାକୁ ଅନ୍ତତଃ କାମ କରେଇ ରଖି ହେବ । ଏଣୁ ଆମେ ନାଚି ନାଚି ଚାଲିଥାଉ । ଏତିକିବେଳେ ମନେପଡ଼ିଲା, ଯେଉଁମାନେ ସୁମେରୁ, କୁମେରୁ ବା ଏଭରେଷ୍ଟ ଅଭିଯାନ ଟିକିଏ ଗୌରବ ପାଇଁ କରିଥିଲେ, ସେମାନେ ବରଫଗଦା ଉପରେ, ବରଫ ଝଡ଼ ଭିତରେ ମୃତ୍ୟୁ ସହିତ ଖେଳ ଖେଳିଥିବେ । ସେମାନେ ନିଶ୍ଚୟ ଅବଶ ହୋଇ ପଡ଼ୁଥିବେ । ସେଇଠି ଯେଉଁମାନେ ବସି ପଡ଼ୁଥିବେ ବା ଅବଶ ହୋଇ ଠିଆହୋଇ ପଡ଼ୁଥିବେ, ସେମାନେ ସବୁଦିନ ପାଇଁ ସେ ବରଫଗଦା ଭିତରେ ଶୋଇ ପଡ଼ୁଥିବେ । ବର୍ତ୍ତମାନ ନିଜେ ପ୍ରଚଣ୍ଡ ଥଣ୍ଡାରେ ଖାଲି ଓଃ ! ଓଃ ! ହେଉଥାଏ ।

କୁହୁଡ଼ି ଆହୁରି ଘନ ହୋଇଉଠିଲା । ଆମ ଗତି ବି କମି ଆସିଲା । ବାଟ ଆଦୌ ଦେଖାଯାଉ ନ ଥାଏ । ଖାଲି ଅନୁମାନ

କର ଚାଲିବା କଥା । ଏଣୁ ପଥର ଝୁଣ୍ଟିବାର ଖୁବ୍ ଭୟ ଥାଏ । ସାବଧାନ ହୋଇ ଚାଲୁଥାଉ । ଆଉ ଦୌଡ଼ିବା କଥା ତ ନୁହେଁ, ଖାଲି ନାଚ ନାଚ ଚାଲୁଥାଉ । ପୋପ୍‌ଭର୍ କୋଟ୍‌ଟାଏ ପିନ୍ଧିଥିଲେ । ସେଇଟା କାଢ଼ି ନନା ଦେହରେ ଗଳାଇ ଦେଲେ । ମାତ୍ର ସାମାନ୍ୟ କୋଟ୍‌ଟା କ ଶୀତ ସମ୍ଭାଳିବ ? ଏମିତି ଆଗେଇ ଯାଉ ଯାଉ ହଠାତ୍ ମୋ ପାଦ ତଳୁ ମେଞ୍ଚାଏ ମାଟି ଖସିଗଲା । ମୋର ମନେହେଲା ମୁଁ ଗୋଟାଏ ଗାତରେ ଖସି ପଡ଼ୁଛି । ଚିତ୍କାର କରିଉଠିଲି । ଦାଦା ମୋତେ ଟାଣି ପଛକୁ ଘୁଞ୍ଚିଗଲେ । ନଚେତ୍ ଆମ ଦଳଟାଯାକ ଗାତରେ ଗଳି ପଡ଼ିଥାନ୍ତୁ । ପୋପ୍‌ଭର୍ କହିଲେ—

—ହଁ, ଏଇ ଗାତଟା ମୁଁ ଆଗରୁ ଦେଖିଥିଲି । ମାତ୍ର ଏହି ଘନ କୁହୁଡ଼ିରେ କ'ଣ କିଛି ଦେଖାଯାଉଅଛି ? ତେବେ ଏଇଟା ପାର ହୋଇଗଲେ ତେଣିକି ଆଉ ବିପଦ ନାହିଁ । ଖାଲି ସମତଳ ଅଂଚଳ ପଡ଼ିବ ।

ଆଉ କେତେ ପାହୁଣ୍ଡ ଯାଇ ନନା ବସି ପଡ଼ିଲା । ଆଉ ପାଦେ ବି ଆଗେଇବାର ଶକ୍ତି ନାହିଁ ତା ପାଦରେ । ଥଣ୍ଡାରେ ମୋର ମଧ୍ୟ ଆଉ ଆଗେଇବାର ଶକ୍ତି ନ ଥିଲା । ମୋ ହାଡ଼ ମାଂସ ସବୁ ଥଣ୍ଡାରେ କଟ୍‌କଟ୍ କଲା । ଏତିକିବେଳେ ମୁଁ ପାଦତଳେ ଗୋଟାଏ ଲତା ଅନୁଭବ କଲି । ମୋତେ ବେଶ୍ ଭଲ ଲଗିଲା । ଥଣ୍ଡା ଆଉ ଏତେ ବାଧିଲା ନାହିଁ । ପୋପ୍‌ଭର୍‌ଙ୍କ କଥା ମନେପଡ଼ିଲା । ଏଇ ମାତ୍ର ଘଣ୍ଟାଏ ତଳେ ସେ ସୁସ୍ନୋଭ୍ ଫୁଲ ବିଷୟରେ ଯାହା କିଛି କହୁଥିଲେ, ତାହା ଏତେ ଶୀଘ୍ର ଯେ ପ୍ରମାଣିତ ହୋଇଯିବ, ତାହା କିଏ ଜାଣିଥିଲା ?

ପୋପ୍‌ଭର୍ କହିଲେ, ଏଥର ସିଧା ଆଗେଇଲେ ଆମେ ହୋଷ୍ଟକ୍‌ରେ ପହଂଚିଯିବା । ସୁସ୍ନୋଭ୍ ଆମକୁ ବାଟ ଦେଖାଇ ଦେଇଛି ।

ବୋଧହୁଏ ଏହି ସୁପ୍ନୋଭ୍ ହିଁ ଆମ ଦେହରେ ଶକ୍ତି ଖେଳାଇଦେଲା । ଏତେଦିନ ପରେ ମୁଁ ମୋ ଗବେଷଣାର ପ୍ରମାଣ ପାଇଗଲି । ମୁଁ କହିଲି—

—ଆଚ୍ଛା, ଏତେ ଥଣ୍ଡାରେ ଭୋଷ୍ଟକ୍‌କୁ ଯିବାର ଚେଷ୍ଟା ନ କରି ଆମେ ଏଇଠି ଠିଆହୋଇ ରହିଲେ କ୍ଷତି କ'ଣ ? କୁହୁଡ଼ିଟା ଗୁଚିଗଲେ ଆମେ ଭୋଷ୍ଟକ୍‌କୁ ଫେରିଯିବା । ପୋପ୍‌ଭର୍ ଫଟେ ଫଟେ କହିଲେ—

—ନା ନା, କେବଳ ସୁପ୍ନୋଭ୍ ଉପରେ ଆସ୍ଥା ସ୍ଥାପନ କରି ଆମେ ଏମିତି ବିପଦ ବରଣ କରିବା ଉଚିତ ନୁହେଁ । ଯଦି କୁହୁଡ଼ି ଆହୁରି ଅଧିକ ଥଣ୍ଡା ହୋଇଯାଏ ? ଭୋଷ୍ଟକ୍ ତ ବେଶ୍ ପାଖରେ ।

ପୋପ୍‌ଭର୍‌ଙ୍କ କଥା ଅନୁସାରେ ଆମେ ସିଧା ଆଗେଇଲୁ । ପ୍ରାୟ ଦଶ ମିନିଟ୍ ଭିତରେ ଆମେ ଭୋଷ୍ଟକ୍ ଭିତରେ ପହଂଚିଲୁ । ସିତାଂଶୁ ଓ ରିନା ଆମକୁ ଅପେକ୍ଷା କରି ରହିଥିଲେ । ଆମେ ପହଞ୍ଚିବା ପରେ ସିତାଂଶୁ ସୁଇଚ୍ ଟିପି ଭୋଷ୍ଟକ୍‌ର ଉତ୍ତାପ ବଢ଼ାଇ ଦେଲେ । କି ଆରାମ ଲାଗିଲା ! ନିନା ଖୁବ୍ କ୍ଳାନ୍ତ ହୋଇପଡ଼ିଥିଲା । ତା ଗୋଡ଼ ହାତ ଟିକିଏ ଦଷାଦଷି କରିଦେବା ପରେ ସେ ସୁସ୍ଥ ହୋଇଗଲା ।

## ଝଡ଼

ତା ପରଦିନ ଦାଦା ଓ ପୋପ୍‌ଭର୍ ଟିକିଏ ଅସୁସ୍ଥ ହୋଇପଡ଼ିଲେ । ବିଶେଷ କିଛି ନୁହେଁ । ଗତକାଲିର ପ୍ରବଳ ଥଣ୍ଡା ଫଳରେ ସେମାନଙ୍କ ଦେହରେ ସାମାନ୍ୟ ଜ୍ୱର ଥିଲା । ତେଣୁ ଆମେ ସେଦିନ ସବୁ ପ୍ରକାର ଯୋଜନା ବାତିଲ କରିଦେଲୁ । ସେଦିନ ଆଉ କେଉଁଆଡ଼େ ବୁଲି ଯିବୁ ନାହିଁ ବୋଲି ଠିକ୍ ହେଲା । ଭୋଷ୍ଟକ୍ ଭିତରେ

ବସି ବସି ମୋତେ ବଡ଼ ଖରାପ ଲାଗିଲା । ଦାଦାଙ୍କ ଦେହ ଖରାପ । ଖୁବ୍ ବେଶି ହେଲେ ଭେଷ୍ଟାକ୍ ତଳେ ସେଇ ସମତଳ ଉପତ୍ୟକାରେ ଟିକେ ବୁଲି ଆସି ହେବ । ମାତ୍ର ଦିନ ତିନଟା ପରେ ମୋତେ ବଡ଼ ଖରାପ ଲାଗିଲା । ଦାଦାଙ୍କ ଜ୍ୱର ଛାଡ଼ି ଆସିଥିଲା । ତାଙ୍କ ଅନୁମତି ନେଇ ଝରଣା ଆଡ଼େ ବୁଲି ଆସିବି ବୋଲି ବାହାରିଲି ।

ଝରଣା ପାଖରେ କିଛି ସମୟ ବସିଲା ପରେ ଭାବିଲି, ଅନ୍ତତଃ ବସିବା ଅପେକ୍ଷା ହାଣିବା ଭଲ । ପାଖରେ ଗୋଟାଏ ସାନ ପାହାଡ଼ ଥିଲା । ଭାବିଲି ତା ଉପରକୁ ଉଠି ଟିକେ ବୁଲି ଆସିବି । ଭାବନାଟା ସଂଗେ ସଂଗେ କାର୍ଯ୍ୟରେ ପରିଣତ ହୋଇଗଲା । ଦିନ ଗୁରଟା ବାଜିଛି । ସାଢ଼େ ପାଞ୍ଚଟା ପୂର୍ବରୁ ଭେଷ୍ଟାକ୍‌ରେ ପହଂଚିଲେ ଚଳିବ । ପାହାଡ଼ଟା ବେଶ୍ ସୁନ୍ଦର ଦେଖାଯାଉଥାଏ । ଚାରିପାଖରେ ଛୋଟ ଛୋଟ ଗଛ । ପାହାଡ଼ଟା ବି ବିଶେଷ ଉଚ୍ଚ ନୁହେଁ । ପାହାଡ଼ରେ ଟିକି ଟିକି ବୁଦା ଉଠିଥାଏ । ମୁଁ ଧୀରେସୁସ୍ଥେ ପାହାଡ଼ ଉପରେ ଚଢ଼ିବାକୁ ଲାଗିଲି । ସୁଲୁସୁଲିଆ ପବନ ବହୁଥାଏ । ଥଣ୍ଡା ନ ଲାଗିଲେ ବି ପାଗ ଗରମ ନ ଥିଲା । ମୁଁ ପାହାଡ଼ ଉପରକୁ ଉଠି ଗୋଟାଏ ପଥର ଉପରେ ବସି ଗୁରିଆଡ଼କୁ ଦୃଷ୍ଟି ପକାଇଲି । ପକେଟରୁ ଦୂରବୀକ୍ଷଣ ଯନ୍ତ୍ର କାଢ଼ି ଭେଷ୍ଟାକ୍ ଆଡ଼େ ଗୁହିଁଲି । ଦେଖିଲି ସିତାଂଶୁ ପାହାଚ ଉପରେ ଠିଆ ହୋଇଛନ୍ତି । ଭେଷ୍ଟାକ୍ ଉପରୁ ଦୃଷ୍ଟି ଫେରାଇ ଅନ୍ୟ ଆଡ଼କୁ ଦୃଷ୍ଟି ପକାଇଲି । କଳା ଭଅଁର-ଆକାଶ ତଳେ ଦିଗ୍‌ବଳୟଟି ପାହାଡ଼ ସେପଟେ ଅନେକ ଦୂରରେ ମଂଗଳ ସହ ମିଶି ଯାଇଛି । ମଝିରେ ମଝିରେ ଗୋଟାଏ ଗଛ ମାତ୍ର ଥିଲା । ପକ୍ଷୀ କୂଜନ କରୁ ନ ଥିଲେ କି ଆକାଶରେ ହଂସମାଳ ଲମ୍ବି ଯାଇ ନ ଥିଲେ ।

ଦକ୍ଷିଣ ଦିଗରେ ସେ ଝରଣାର ଉତ୍ପତ୍ତି ସ୍ଥଳ । ହ୍ରଦଟା ଗଛପତ୍ର ଉହାଡ଼ରେ ଟିକେ ଟିକେ ଦେଖାଯାଉଥିଲା । ଝରଣାର କ୍ଷୀଣ

ଲାସ୍ୟମୟୀ ଅଙ୍କାବଙ୍କା ଧାର କୁଳୁ କୁଳୁ ହୋଇ ବହିଯାଇଛି । ସେଦିନର ଠେକୁଆ ଗାତ କଥା ମନେପଡ଼ିଲା । ସେ କଥା ଆଉ କ'ଣ ଭୁଲି ପାରିବି କେବେ ? ପୃଥିବୀ କଥା ମନେପଡ଼ି ଦୁଃଖ ଲାଗିଲା । ସତେ କ'ଣ ଆମେ ଆଉ ପୃଥିବୀକୁ ଫେରି ପାରିବୁ ନାହିଁ ? ତେବେ ଏଠାରେ ବଂଚିବୁ ବା କେମିତି ? ଖାଦ୍ୟ ସରିଯିବ, ମଂଗଳର ଭୟଙ୍କର ଅମଂଗଳ ଶୀତ; ଅଣ୍ଡା ଶେଷରେ ଆମକୁ କବଳିତ କରି ଆମର ସମାଧି ରଚନା କରିବ ଏଇଠି । ଘର କଥା ମନେ ପଡ଼ିଲା । ପିଲାଦିନୁ ମୋର ବାପା ନ ଥିଲେ । ବୋଉ ମୋତେ ପାଳିଛି ଏପର୍ଯ୍ୟନ୍ତ··· । ମହାଶୂନ୍ୟ ଭିତରେ ଅଭିଯାନ କରିବାବେଳେ ଯେଉଁ ମନ ଖୁବ୍ ଆନନ୍ଦ, ଉତ୍ସାହ ଓ ସାହସରେ ସମଗ୍ର ବିଶ୍ୱକୁ ପ୍ରଦକ୍ଷିଣ କରିଯାଉଥିଲା, ସେଇ ମନଟା ନରମି ଗଲା, ଆଶଂକାରେ ତରଳି ଗଲା ।

ଏମିତି ଅନେକ କଥା ଭାବି ଗୁଲିଛି । କେତେବେଳେ ଆକାଶରୁ ସୂର୍ଯ୍ୟ ଲୁଚିଯାଇ ଝଡ଼ ଗର୍ଜ୍ଜନ କରିବାକୁ ଆରମ୍ଭ କଲାଣି, ମୋର ଖିଆଲ ନାହିଁ । ଯେତେବେଳେ ଖୁବ୍ ଶୀତ ପବନ ବହି ଆକାଶରେ ମେଘ ଗର୍ଜ୍ଜନ କରିବାକୁ ଲାଗିଲା, ମୋ ଚମକ ଭାଂଗିଲା । ଘଡ଼ିକୁ ଗୁହିଁ ଦେଖିଲି ସାଡ଼େ ପାଞ୍ଚଟା ବାଜିଲାଣି । ମନରେ ଛନକା ପଶିଗଲା । ନା, ନିର୍ଦ୍ଦୟୀ ଆକାଶଟାର ହାବୁଡ଼ରୁ ଆଉ ଉଦ୍ଧାର ନାହିଁ ଆଜି । ମେଘଗୁଡ଼ାକ ପ୍ରବଳ ବେଗରେ ଆନ୍ଦୋଳିତ ହେଉଥାଏ । ସେଗୁଡ଼ାକ ସତେ ଯେମିତି ମୋ ଉପରେ ପ୍ରଚଣ୍ଡ ରାଗି ଯାଇଛନ୍ତି । ପାଞ୍ଚ କୋଟି ମାଇଲ ଦୂରର ମଣିଷ ଆଜି ମଂଗଳ ଗ୍ରହରେ ପାଦ ପକାଇଛି କାହା ସାହସରେ ? ଏ ମହାଶୂନ୍ୟରେ ପ୍ରକୃତି ବିରୁଦ୍ଧରେ ବିଦ୍ରୋହ କରି, ପ୍ରକୃତିର ସବୁ ବାଧା ଅତିକ୍ରମ କରି, ମଣିଷ କେଉଁ ଶକ୍ତିରେ ମଂଗଳ ଉପରେ ଦିଗ୍‌ବିଜୟ ଆରମ୍ଭ କରୁଛି ! ମୋ ଗୁନ୍ତି ଅଟକିଗଲା । ଭାବିବାକୁ ବେଳ କାହିଁ ? ଚର ଚର ହୋଇ ଚାଳକୁ

ଓହ୍ଲାଇ ଗଲି । ଭେଷ୍ଟକ୍‌ରେ ତ ଆଉ ପହଂଚ ହେବନି । କେଉଁଠି ଗୁମ୍ଫା ହେରକା ଦେଖି ରହିଯିବି ବୋଲି ଭାବିଲି । ମାତ୍ର ପାହାଡ଼ ଉପରୁ ଓହ୍ଲାଇବା ପୂର୍ବରୁ ପ୍ରଚଣ୍ଡ ଝଡ଼ ଗର୍ଜି ଉଠିଲା । ଚାରିଆଡ଼ ଅଂଧାର ହୋଇଗଲା । ଖୁବ୍ ଥଣ୍ଡା ଓ ଭୟରେ ମୋ ଦେହ ଥରିବାକୁ ଲାଗିଲା ।

ଆଉ ଠିଆ ହେବାର ଉପାୟ ନାହିଁ । ବସି ବସି ତଳକୁ ଓହ୍ଲାଇବାକୁ ଲାଗିଲି । ଏତେ ଜୋର୍‌ରେ ପବନ ବହୁଥାଏ ଯେ ପ୍ରତି ମୁହୂର୍ତ୍ତରେ ମତେ ଉଡ଼େଇ ନେବାର ଭୟ ଥାଏ । ଗୋଟାଏ ପରେ ଗୋଟାଏ ଗଛ ଉପୁଡ଼ି ପଡ଼ୁଥାଏ । ଠିକ୍ ଏତିକିବେଳେ ପ୍ରକୃତି ମୋ ବିରୁଦ୍ଧରେ ଆଉ ଗୋଟାଏ ଅସ୍ତ୍ରରେ ଯୁଦ୍ଧ ଆରମ୍ଭ କଲା । ପବନ ଆହୁରି ବଢ଼ିଗଲା । ପ୍ରଚଣ୍ଡ ପବନରେ ମନେହେଲା ସତେ ଯେମିତି ସାରା ପାହାଡ଼ଟା ଓଲଟିଯିବ । ପାହାଡ଼ରୁ ଛୋଟ ଛୋଟ ପଥର ତଳକୁ ଗଡ଼ିବାକୁ ଲାଗିଲା । ମୁଁ ମୋ ଜୀବନର ଆଶା ଛାଡ଼ି ଦେଲି । କେତେବେଳେ ଯଦି ଗୋଟାଏ ପଥର ଠିକ୍ ମୋ ଉପରେ ଗଡ଼ିଯାଏ, ତେବେ ପାହାଡ଼ରେ ପଥର ଦେହରେ ମୋ ହାଡ଼ ମାଂସ ସବୁ କଚ୍ଛି ପେଷି ହୋଇ ଏକାକାର ହୋଇଯିବ । ଦେଖିଲି ଆଉ ଓହ୍ଲାଇ ହେବ ନାହିଁ । ଗୋଟାଏ ଗଛର ଗଣ୍ଡି ପଛରେ ଗଛକୁ ଖୁବ୍ ଜୋର୍‌ରେ ଭିଡ଼ି ଧରି ବସି ରହିଲି । ଦମକା ଦମକା ପବନରେ ମତେ ଉଡ଼ାଇ ମଂଗଳ ଉପରେ ଫୋପାଡ଼ି ଦେବାକୁ ପ୍ରକୃତି ଚେଷ୍ଟା କରୁଥିଲା ଯେମିତି । ମାତ୍ର ମୋ ବିପଦ ସେତିକିରେ କଟିଗଲା ନାହିଁ । ଯେଉଁ ଗଛଟାକୁ ଧରି ବସିଥିଲି, ସେ ଗଛଟା ମଡ଼ ମଡ଼ ହେଲା । ଛାନିଆରେ ତାକୁ ଛାଡ଼ି ଟିକିଏ ଘୁଞ୍ଚି ଆସିବାକୁ ଚେଷ୍ଟା କଲି । ଠିକ୍ ପର ମୁହୂର୍ତ୍ତରେ ଗଛଟା ଉପୁଡ଼ି ପଡ଼ିଲା । ପର୍ବତ ଉପରେ ପଡ଼ି ଖୁବ୍ ଜୋର୍‌ରେ ତଳକୁ ଗଡ଼ିଗଲା । ଭଗବାନଙ୍କୁ ଯେତେ ନିନ୍ଦା କଲେ ବି ଏତିକିବେଳେ

ଗୋଟିଏ ଧନ୍ୟବାଦ ଦେବାକୁ ଇଚ୍ଛା ହେଲା । ଆଉ ମୁହୂର୍ତ୍ତେ ମାତ୍ର ବିଳମ୍ବ କରିଥିଲେ ଗଛତଳେ ଚାପି ହୋଇ ଯାଇଥାନ୍ତି । ଗଛକୁ ସିନା ଗ୍ରୁନଆରେ ଛାଡ଼ିଦେଲି, ମାତ୍ର ନିଜକୁ ସମ୍ଭାଳି ପାରୁଛି କେତେବେଳେ ? ହଠାତ୍ ଏକ ଦମକା ପବନରେ ମୁଁ ଗୋଟାଏ ପଥର ଗଡ଼ିଲା ପରି ତଳକୁ ଗଡ଼ିବାକୁ ଲାଗିଲି । ମୋର ମନେ ହେଉଥାଏ, ମୁଁ ଯେମିତି ଉଡ଼ିଯାଇ ଭେଷ୍ଟୁକ୍ ପାଖରେ ପଡ଼ିବି ।

ହଠାତ୍ ଏତିକିବେଳେ ଗୋଟାଏ ପ୍ରଚଣ୍ଡ ଘଡ଼ଘଡ଼ିରେ ମୁଁ ଚମକି ପଡ଼ିଲି । ମୋର ମନେହେଲା, ଏ ମୁହୂର୍ତ୍ତରେ ମୋ ଜୀବନ ପିଣ୍ଡ ଛାଡ଼ି ଚାଲିଯିବ । ମାତ୍ର ମୁଁ ମୁକ୍ତି ପାଇଲି ନାହିଁ । ବଜ୍ରମାଡ଼ରୁ ସେ ପାହାଡ଼ରୁ ଖଣ୍ଡେ ଫାଟିଗଲା । ଗୋଟାଏ ବିରାଟ ପଥରଖଣ୍ଡ ମେଘ ଗର୍ଜ୍ଜନ କଲା ପରି ଗର୍ଜ୍ଜନ କରି ମୋ ପଛରେ ଗଡ଼ ଗଡ଼ ଆସିଲା । ମୁଁ ପ୍ରାଣ ବିକଳରେ ଚିତ୍କାର କରିଉଠିଲି । ମାତ୍ର ମୋ ଭଳି ଏକ ଅସହାୟ ଜୀବର ଚିତ୍କାର ଶୁଣୁଛି କିଏ ? ପ୍ରଚଣ୍ଡ ପବନ ଆଘାତରେ ମୁଁ ଗଡ଼ି ଚାଲିଥାଏ । ଉପୁଡ଼ି ପଡ଼ିଥିବା ଗୋଟିଏ ଗଛରେ ଦୈବାତ୍ ସେ ପଥରଟା ଲାଗି ଅଟକି ଗଲା । ମାତ୍ର ମଂଗଳର ଦୁର୍ଦ୍ଧାନ୍ତ ପ୍ରକୃତି ମତେ କ'ଣ ଛାଡ଼ୁଛି ? ପରେ ପରେ ଆଉ ଗୋଟିଏ ଦମକା ପବନରେ ପଥରଟା ଗଡ଼ି ଆସିଲା । ମୁଁ ପୁଣି ଥରେ ଚିତ୍କାର କରିଉଠିଲି— ପଥରଟା ମୋ ପାଖକୁ ଲାଗି ଆସିଲାଣି । ଆଉ କେତୋଟି ସେକେଣ୍ଡ ଭିତରେ ମୁଁ ଚୂର ହୋଇଯିବି । ଆଖି ବୁଜି ପକାଇଲି । ତାର ପର ମୁହୂର୍ତ୍ତରେ ଅନୁଭବ କଲି ମୁଁ ଶୂନ୍ୟରେ ଖସୁଛି । ହଠାତ୍ ତଳେ ପିଟି ହୋଇଗଲି । ଆଖି ଖୋଲି ଦେଖିଲି, ମୁଁ ଗୋଟାଏ ଗୁମ୍ଫା ଆଗରେ ଖସି ପଡ଼ିଛି । ଉପରକୁ ଚାହିଁ ଦେଖେ, ସେହି ବିରାଟ ପଥରଟା ମୋ ଉପରେ ଶୂନ୍ୟରୁ ଖସୁଛି । ମୁଁ ଚିତ୍କାର କରି

ଗୁମ୍ଫା ଭିତରକୁ ଗଡ଼ି ଗଲି । ଠିକ୍ ପରେ ପରେ ପଥରଟା ପ୍ରଚଣ୍ଡ ଶବ୍ଦ କରି ଗୁମ୍ଫାଦ୍ୱାରରେ ଆସି ପଡ଼ିଲା ଓ ଗୁମ୍ଫାର ମୁହଁକୁ ବନ୍ଦ କରିଦେଲା । ମୋର ଆଉ କିଛି ମନେରହିଲା ନାହିଁ । ଗୋଟାଏ ସ୍ୱପ୍ନରାଇଜରେ ବିଚରଣ କରୁଥିବା ପରି ଜଣାଗଲା ।

ଯେତେବେଳେ ଆଖି ଖୋଲିଲି, ଦେଖିଲି ସକାଳ ହୋଇ-ଗଲାଣି । ଗୁମ୍ଫାଦ୍ୱାରର ଫାଙ୍କ ବାଟେ କିଛି କିଛି ଆଲୋକ ଆସୁଛି । ମୋ ଦେହଟା ଭୟଂକର ଭାବରେ ଦରଜ ହୋଇଛି । ପରୀକ୍ଷା କରି ଦେଖିଲି, ମୋ ଭାଗ୍ୟ ଭଲ । କାରଣ ହାଡ଼ ଭାଂଗିନି, ମାତ୍ର ମୁଣ୍ଡଟା ଫାଟି ଯାଇଛି । ରକ୍ତ ବୋହି ମୁଣ୍ଡ ଚାରିପାଖରେ ଲାଗି ଶୁଖି ଯାଇଛି । ଆଉ ଦେହସାରା ରକ୍ତାକ୍ତ । ଦେହ ଏତେ ଦରଜ ହୋଇଥାଏ ଯେ, ମୁଁ ଉଠିପାରିଲି ନାହିଁ । ଶୀତଳ ପବନ ଦେହରେ ବାଜି ଭଲ ଲାଗୁଥାଏ । ଧୀରେ ଧୀରେ ଆଖି ବୁଜିହୋଇ ଆସିଲା ।

ଆଖି ଖୋଲିଲାବେଳକୁ ଦିନ ଦ୍ୱିପ୍ରହର ହେବ । ଫାଙ୍କ-ବାଟେ ସୂର୍ଯ୍ୟାଲୋକ ଆସି ମୋ ଉପରେ ପଡ଼ୁଥିଲା । ବହୁତ କଷ୍ଟେ-ମଷ୍ଟେ ଉଠି ଗୁମ୍ଫାର କାନ୍ଥକୁ ଆଉଜି ବସିଲି । ହାତକୁ ଚାହିଁଲି, ମାତ୍ର ଦଣ୍ଡଟା ଚୂନା ହୋଇ ଖସି ପଡ଼ୁଛି । ହାତରେ ଖାଲି ବେଲ୍ଟଟା ଲାଗିଛି । ସମୟ ଜାଣି ହେଲାନି । ବୋଧହୁଏ ବାରଟା ସେପଟେ ହେବ । ଖୁବ୍ ଭୋକ କରୁଥାଏ । ଧୀରେ ଧୀରେ ହାମୁଡ଼ି ହାମୁଡ଼ି ସେଇ ଫାଙ୍କବାଟେ ବାହାରକୁ ଆସିଲି । କାଳର ଝଡ଼ରେ ସେ ଅଂଚଳଟା ଏକଦମ ନଷ୍ଟ ହୋଇଯାଇଛି । ଗଛପତ୍ର ଗୋଟିଏ ନାହିଁ । ଖୁବ୍ ଶୋଷ କଲା, ମାତ୍ର ପାଣି କାହିଁ ? ମୋର ମନେହେଲା, କିଛି ଦୂରରେ ସେ ଝରଣାଟା ବହି ଯାଇଛି । ସେଠାରେ ଅନ୍ତତଃ

କିଛି ପାଣି ମିଳିବ । ଅତି କଷ୍ଟରେ ବସି ବସି, ହାମୁଡ଼ି ହାମୁଡ଼ି ଆଗକୁ ଗ୍ଲଲି । ଝରଣାର କୁଳୁ କୁଳୁ ଶବ୍ଦ ଶୁଣାଯାଉଥାଏ । କିଛି ସମୟ ପରେ ଝରଣାର ପାଣି ଦେଖାଗଲା । ବହୁ କଷ୍ଟରେ ଗ୍ଲଲିଛି । ଖୁବ୍ ଶୋଷରେ ତଣ୍ଟି ଶୁଖି ଯାଉଥାଏ । ପ୍ରାୟ ପଚିଶ ହାତ ବାଟ ଯିବାକୁ ମୋତେ ଅଧଘଣ୍ଟାଏ ଲାଗିଗଲା । ଝରଣାରୁ ପେଟେ ପାଣି ପିଇ ପାଖରେ ଥିବା ଗୋଟିଏ ପଥର ଉପରେ ଶୋଇ ପଡ଼ିଲି ।

ହଠାତ୍ କାହାର ଡାକ ମୋ କାନରେ ପଡ଼ିଲା । ଖୁବ୍ ଦୂରରୁ କିଏ ଯେମିତି ଡାକୁଛି—"ଶ୍ୟାମଳେନ୍ଦୁ, ଶ୍ୟାମଳେନ୍ଦୁ...।" ଦାଦାଙ୍କ କଣ୍ଠସ୍ୱର ପରି ମୋର ମନେହେଲା । ମାତ୍ର ମୁଁ ପାଟି କରିପାରୁ ନ ଥାଏ । ଅପେକ୍ଷା କଲି; ଡାକଟା କ୍ରମଶଃ ଧୀରେ ଧୀରେ ପାଖେଇ ଆସୁଥାଏ । ମୁଁ କାନ ଡେରିଲି । ଯେଉଁ ଗାତରେ ଖସି ପଡ଼ିଥିଲି, ସେଇ ପାହାଡ଼ ଆଡ଼ୁ ଶୁଭୁଥାଏ । ଭାବିଲି, ମୁଁ ପୁଣି ସେହି ଗାତରେ ଖସି ପଡ଼ିଥିବି ବୋଲି ଆଶଙ୍କା କରି ବୋଧହୁଏ ଦାଦା ହେରିକା ମୋତେ ସେଠାରେ ଖୋଜୁଥିଲେ । ସେମାନଂକ ପାଖରେ ଦୂରବୀକ୍ଷଣ ଯନ୍ତ୍ର ନିଶ୍ଚୟ ଥିବ । କିଛି ସଂକେତ ଦେବା ଦରକାର । ହୁଏତ ସେମାନେ ମୋତେ ଦେଖି ନ ପାରନ୍ତି । ମୁଁ ଉଠି ଠିଆ ହେବାକୁ ଭାବିଲି, କିନ୍ତୁ ଠିଆ ହେବାକୁ ମୋର ଶକ୍ତି ନ ଥିଲା । ଗୋଟାଏ ଉପାୟ କଲି । ବହୁ କଷ୍ଟରେ ଦେହରୁ ରକ୍ତାକ୍ତ କୋଟ୍‌କୁ ବାହାର କରି ଆଣିଲି । ପାଖରେ ଗୋଟିଏ ଭଙ୍ଗା ଗଛର ଡାଳଟିଏ ପଡ଼ିଥିଲା । ସେଇଟା ଗୋଟାଇ ଆଣି ତା ଅଗରେ କୋଟ୍‌କୁ ଟଂଗେଇ ଦେଇ ଉପରକୁ ଟେକି ଧରିଲି । ସେମିତି ଶୋଇଥାଏ । ହାତ ଓ ପିଠିର କ୍ଷତ ସ୍ଥାନ ଫାଟି ପୁଣି ରକ୍ତ ବୋହିଲା । ଭୟଂକର କଷ୍ଟ ହେଲା । ମୋ ହାତରୁ ବାଡ଼ିଟା ସହିତ କୋଟ୍ ବି ଖସି ପଡ଼ିଲା ।

ଆଖି ଖୋଲିବା ପରେ ଦେଖିଲି, ନନାଙ୍କୁ ଛାଡ଼ି ଆଉ ସମସ୍ତେ ମୋ ପାଖରେ ଠିଆ ହୋଇଛନ୍ତି । ଦାଦାଙ୍କ କୋଳରେ ମୁଁ ମୁଣ୍ଡ ଦେଇ ଶୋଇଛି । ଶନା ମୋ ମୁଣ୍ଡରେ ପାଣି ଢାଳୁଛି । ସମସ୍ତଙ୍କ ଆଖିରେ ଲୁହ ଜମିଥାଏ । ଏତେଦିନ ପରେ ମୁଁ ଦାଦାଙ୍କ ଆଖିରେ ପ୍ରଥମ ଥର ପାଇଁ ଲୁହ ଦେଖିଲି । ମୋ ଚେତନା ଫେରିଆସିବା ପରେ ଦାଦା, ପୋପ୍‌ଭିର୍ ଓ ଶନା ମିଶି ମୋତେ ଭେଷ୍ଟିକ୍‌କୁ ନେଇଗଲେ । ଦେହର କ୍ଷତ ସ୍ଥାନରେ ଔଷଧ ଲଗେଇ ପଟି ବାନ୍ଧି ଦେଲେ । ମୁଁ କିଛି ବିସ୍କୁଟ୍, ସିଝା ଅଣ୍ଡା ଓ କଫି ଖାଇଲି । ଟିକିଏ ଆରାମ ଲାଗିଲା । ନନା ମୋର ଏ ଅବସ୍ଥା ଦେଖି ଭେ ଭେ କାନ୍ଦି ପକେଇଲା । ମୁଁ କିଛି କହିବାକୁ ଭାବୁଥିଲି, ମାତ୍ର ଦାଦା ମନା କଲେ । କିଛି ସମୟ ପରେ ଭେଷ୍ଟିକ୍‌ରେ ମୁଁ ଶୋଇପଡ଼ିଲି ।

## ଉପାୟ କାହିଁ ?

ମଂଗଳ ଗ୍ରହରେ ପହଂଚିବା ପ୍ରାୟ ସତର ଅଠର ଦିନ ହୋଇଗଲାଣି । ସେଦିନ ଜଳଖିଆ କରି ସାରି ରାତିରେ ଗୋଟାଏ ବୈଠକ ଡାକିଲୁ । ମୋର ଅସୁସ୍ଥତା ଫଳରେ ଦାଦା ଓ ଅନ୍ୟମାନଙ୍କର ସବୁ ଯୋଜନା ବାତିଲ କରି ଦିଆଯାଇଥିଲା । ମୁଁ ସୁସ୍ଥ ହେବା ପରେ ପୂର୍ବ ପରିକଳ୍ପନା ଅନୁସାରେ ଆଲୋଚନା କରି ଆମ କାର୍ଯ୍ୟ କରିବାକୁ ଠିକ୍ ହେଲା ।

ଦାଦା କହିଲେ—ଦେଖ, ଆମେ ଅନେକ ଚେଷ୍ଟା କଲେ ବି ମୋଟରଟା ସଜାଡ଼ି ପାରିଲୁ ନାହିଁ । ଶୀତକାଳ ଆସିଗଲାଣି । ତା' ଛଡ଼ା ଆମ ଯାନର ବିଦ୍ୟୁତ୍ ମଧ୍ୟ ସାରା ଶୀତକାଳଟା ଯିବ ନାହିଁ । ବିଦ୍ୟୁତ୍ ବିନା ତ ଆମେ ଯାନରେ ରହିପାରିବୁ ନାହିଁ ।

ହେଷ୍ଟକ୍ ପୃଥିବୀକୁ ଫେରିବାର ସବୁ ବାଟ ବନ୍ଦ ହୋଇଯାଇଛି । ଏଣୁ ଆମେ ଏଠାରୁ ଉଦ୍ଧାର ପାଇବାର ଏକମାତ୍ର ଉପାୟ ହେଲା, ପୃଥିବୀରୁ ଯଦି କେହି ଆସେ ।

—କିନ୍ତୁ ପୃଥିବୀରୁ ଆଉ କିଏ ଆସି ପାରିବ ଜନ୍ ଗ୍ଲେନ୍ ବିନା ? ରିନା କହିଲା । ଦାଦା ଟିକିଏ ରହି କହିଲେ—

—ହଁ, ସେଦିନର ଘଟଣା ପରେ ଯେ ଜନ୍ ଗ୍ଲେନ୍ ଆମକୁ ସାହାଯ୍ୟ କରିବେ, ତାହା ମୋର ବିଶ୍ୱାସ ହେଉନି । ଅବଶ୍ୟ ଜନ୍ ଗ୍ଲେନ୍ ମଂଗଳ ଗ୍ରହକୁ ଆସିବାକୁ ହୁଏତ ପ୍ରସ୍ତୁତ ହୋଇ ସାରିବେଣି । ମାତ୍ର ଆମର ବିପଦ କଥା ସେ ଜାଣିବେ କେମିତି ? ରେଡିଓ-ଟେଲିଗ୍ରାଫ୍‌କୁ ତ ଆମେ ସଜାଡ଼ିବାରେ ବିଶେଷ ମନ ଦେଇ ନାହୁଁ । ସେଇଟା ବି ଖୁବ୍ ଖରାପ ହୋଇଯାଇଛି । ଲେନିନ୍-ଗ୍ରାଡ୍ ସହ କଥାବାର୍ତ୍ତା କରିବା ସମ୍ଭବ ନୁହେଁ ।

ଆମେ ଚୁପ୍ ହୋଇ ଶୁଣୁଥାଉ । ଏମିତି ନୀରବରେ କିଛି ସମୟ କଟିଗଲା । ସିତାଂଶୁ କହିଲେ—

—ଆଚ୍ଛା ଡକ୍ଟର୍, ଶୀତଦିନଟା କଟେଇବା କେଉଁଠି ? ଶୀତଦିନଟା ସାରା ତ ବିଦ୍ୟୁତ୍ ଶକ୍ତି ଅଣ୍ଟିବ ନାହିଁ ।

—ହଁ, ସେଇଟା ଗୋଟାଏ ବଡ଼ ସମସ୍ୟା । ପୋପ୍‌ଭର୍ ଓ ମୁଁ ବହୁ ଆଲୋଚନା କରି ଠିକ୍ କରିଛୁ ଶୀତଦିନ ପୂର୍ବରୁ ଆମକୁ ହେଷ୍ଟକ୍ ଛାଡ଼ିବାକୁ ପଡ଼ିବ । ଦାଦା ଖୁବ୍ ଚିନ୍ତାକୁଳ ଭାବରେ ଉତ୍ତର ଦେଲେ ।

—ତେବେ ରହିବା କେଉଁଠି ? ମୁଁ ଆତଙ୍କରେ ପଚାରିଲି । ଦାଦା ଆହୁରି ଚିନ୍ତାକୁଳ ହୋଇଉଠିଲେ । କିଛି ସମୟ ପରେ କହିଲେ—

—ହଁ, ମୁଁ ସେଇ କଥା ଅନେକ ଭାବିଛି । ମୁଁ ଭାବୁଛି, ଶୀତଦିନଟା କଟାଇବା ପାଇଁ ଆମକୁ ଗୋଟିଏ ବିରାଟ ଗୁମ୍ଫା ଖୋଜିବାକୁ ପଡ଼ିବ । ସେଇଠି ଅନେକ ଶୁଖିଲା କାଠ ନେଇ ଜମେଇବାକୁ ପଡ଼ିବ । ଶୀତଦିନର ପ୍ରଚଣ୍ଡ ବରଫପାତରୁ ଏଇ ନିଆଁ ହିଁ ଆମକୁ ରକ୍ଷା କରିପାରିବ । କିନ୍ତୁ କଥାଟା ହେଲା, ଆମେ ଏତେ ବଡ଼ ଗୁମ୍ଫା ପାଇବା କେଉଁଠି ?

—ଆମେ ତ ଅନ୍ୟ କାହା ଉପରେ ନିର୍ଭର କରି ରହିପାରିବା ନାହିଁ । ଅନ୍ତତଃ ଜୀବନ ବଞ୍ଚେଇବାକୁ ଏଇ ଉପାୟ ଅବଲମ୍ବନ କରିବା ଛଡ଼ା ଅନ୍ୟ ଉପାୟ ନାହିଁ । ପୋପ୍‌ଭିର୍ କହିଲେ । ରିନା କହିଲା—

—ଯଦି ଏମିତି ଗୁମ୍ଫା ଆମେ ନ ପାଉ ?

ଏ ପ୍ରଶ୍ନର ଉତ୍ତର କ'ଣ ବା ଥାଇପାରେ ? ସବୁ କିଛି ଅନିଶ୍ଚିତ ଭବିଷ୍ୟତ ଉପରେ । ଭବିଷ୍ୟତଠାରୁ କିଛି ଗୋଟାଏ ନିଶ୍ଚିତ ଉପାୟ କେମିତି ବାହାର କରିହେବ ? ରିନାର ଏ ପ୍ରଶ୍ନରେ ସମସ୍ତେ ନୀରବ ହୋଇଗଲେ । ଦାଦା କିଛି ସମୟ ପରେ କହିଲେ—

—ଆମେ ଅନ୍ତତଃ ଏତିକ ଆଶା କରିବା । ତା' ଛଡ଼ା ଅନ୍ୟ ଉପାୟ ତ ମତେ ଦେଖାଯାଉ ନାହିଁ । ତେବେ ଧୈର୍ଯ୍ୟ ହରାଇବା ଉଚିତ ନୁହେଁ । ମୋର ସମ୍ପୂର୍ଣ୍ଣ ବିଶ୍ୱାସ, ଆମେ ଏମିତି ଅସହାୟ ଭାବରେ ପ୍ରକୃତିର ଶୀକାର ହେବାପାଇଁ ଭଗବାନ କେବେ ଚାହାନ୍ତି ନାହିଁ ।

—ପରିକଳ୍ପନା ଓ କାର୍ଯ୍ୟ ଭିତରେ କୌଣସି ତଫାତ୍ ରହିବା ଉଚିତ ନୁହେଁ । ଯାହା କରିବା ଉଚିତ, ତାହା ତତ୍‌କ୍ଷଣାତ୍

ଆରମ୍ଭ କରିଦେବା ଦରକାର । କାରଣ ଆମ ହାତରେ ସମୟ ଖୁବ୍ ଅଳ୍ପ । ପୋପ୍‌ଭର୍ କହିଲେ । ଦାଦା ତାଙ୍କ କଥାକୁ ସମର୍ଥନ କରି କହିଲେ—

—ହଁ, କାଲିଠାରୁ ଆମେ ଅନୁସନ୍ଧାନ ଆରମ୍ଭ କରିଦେବା ।

—କିନ୍ତୁ ଏତେଦିନ ଭିତରେ ଆମେ ବୁଲି ବୁଲି ଗୋଟିଏ ଉପଯୁକ୍ତ ଗୁମ୍ଫା ତ ଏପର୍ଯ୍ୟନ୍ତ ଦେଖି ପାରିନୁ । ସିତାଂଶୁ କହିଲେ ।

—ହଁ, ତା ସତ; କିନ୍ତୁ ସେଥିପାଇଁ ଆମକୁ ଏ ଅଞ୍ଚଳର ପ୍ରତି ଗଳିକନ୍ଦି ଖୋଜିବାକୁ ପଡ଼ିବ । ବାଟରେ ହୁଏତ ପୁଣି ସେଇ କୁହୁଡ଼ି ଭେଟିପାରୁ; ପୁଣି ଝଡ଼ର ସମ୍ମୁଖୀନ ହୋଇପାରୁ । ନାନା ବିପଦ, ନାନା କଷ୍ଟ ଭିତରେ ଆମକୁ ଆଗେଇ ଯିବାକୁ ପଡ଼ିବ । ନଚେତ୍ ଜୀବନ ରକ୍ଷା କରିବାର ଉପାୟ କାହିଁ ? ମୃତ୍ୟୁ ସହିତ ଆମକୁ ହାତାହାତି ଯୁଦ୍ଧ କରିବାକୁ ପଡ଼ିବ । ଦାଦା ଉତ୍ତର ଦେଲେ ।

—ଭେଷ୍ଟକର୍‌ର ପୂର୍ବ ଦିଗକୁ ପ୍ରାୟ ଦଶ ବାର ମାଇଲ ଦୂରରେ ଗୋଟାଏ ଖୁବ୍ ବଡ଼ ପର୍ବତଶ୍ରେଣୀ ଅଛି । ମୁଁ ଭାବୁଛି, ସେଇଠି ଆମେ ଖୋଜିଲେ ଗୁମ୍ଫା ମିଳିପାରେ । ମୁଁ କହିଲି ।

—ମୁଁ ତ ସେହି କଥା କହିବି ବୋଲି ଭାବୁଥିଲି । ସେଠାକୁ କାଲି ଯାତ୍ରା ଆରମ୍ଭ କରିବା । ମୁଁ, ପୋପ୍‌ଭର୍ ଓ ସିତାଂଶୁ ଯାଉଛୁ ।

ମୋ ମନ ଖରାପ ହୋଇଗଲା । ଏକୁଟିଆ ସେ ଜନା ପାଭ୍‌ଲୋଭ୍‌ନା ସହିତ କିଏ ରହିବ ? କହିଲି—

—ଦାଦା, ମତେ ନେଉନା ? ଏକୁଟିଆ ଏଠି ମତେ ଆଦୌ ଭଲ ଲାଗିବ ନାହିଁ ।

—କିନ୍ତୁ ତୁ ଯେ ସଂପୂର୍ଣ୍ଣ ସୁସ୍ଥ ହୋଇନୁ । ଦାଦା ରାଜି ହେଲେନାହିଁ ।

—ନା ନା, ମୁଁ ବେଶ୍ ସୁସ୍ଥ ହୋଇଗଲଣି । ଏବେ ଯଦି କହିବ, ଦଶ ମାଇଲ ଦୌଡ଼ିଯିବି । ଖୁବ୍ ଉତ୍ସାହରେ ମୁଁ ଏତକ କହି ପକାଇଲି । ପ୍ରୋଫେସର୍ ହସି ହସି କହିଲେ—

—ବାଃ ! ତାହାହେଲେ ଶ୍ୟାମଳେନ୍ଦୁ, ତୁମେ ଚନ୍ଦ୍ରଶେଖର ଆଉ ସିତାଂଶୁଙ୍କୁ କାଲି ନେଇଯାଅ । ମୋର ବି ହୋଷ୍ଟେଲ୍‌ରେ ଟିକିଏ କାମ ଅଛି । ରିନାକୁ କାହିଁକି ହଇରାଣ କରିବା ? ସେ ହୋଷ୍ଟେଲ୍‌ରେ ରହୁ; ମୋର କେତୋଟି କଥା ଲେଖି ରଖିବ ।

—କିନ୍ତୁ ସେଠାରେ ପହଂଚି ତ ଗୋଟାଏ ଦିନରେ ଫେରି ପାରିବା ନାହିଁ । ମୁଁ କହିଲି ।

—ହଁ, ତାହା ସତ କଥା । ସେଥିପାଇଁ ଆମକୁ ବାହାରେ ଅନ୍ତତଃ ଗୋଟାଏ ରାତି କଟାଇବାକୁ ପଡ଼ିବ । ଆମକୁ ଖାଦ୍ୟପଦାର୍ଥ ଆଦି ନେଇଯିବାକୁ ହେବ । ସଂଗରେ ଯଥେଷ୍ଟ ଗରମ ପୋଷାକ ବି ନେଇଯିବାକୁ ପଡ଼ିବ, କାଳେ ପୁଣି କୁହୁଡ଼ି ଆମକୁ ଆକ୍ରମଣ କରିବ । ସବୁ ଠିକ୍ କରି ଶୋଇଲୁ ।

ସକାଳୁ ଖୁବ୍ ଶୀତ ଜଣାଗଲା । ତଥାପି ଆମେ ଖିଆପିଆ ସାରି ଯାତ୍ରା ଆରମ୍ଭ କରିଦେଲୁ । ତା' ପରଦିନ ଫେରିବାକୁ ଚେଷ୍ଟା କରିବୁ ନାହିଁ ବୋଲି କହିଗଲୁ । ଯାହା ଆବଶ୍ୟକ, ସଂଗରେ ସବୁ ନେଲୁ । ଏଣେତେଣେ ବୁଲି, ଅନେକ ଅନୁସନ୍ଧାନ କରି, ଆମେ ନିର୍ଦ୍ଧାରିତ ପର୍ବତମାଳା ପାଖରେ ପହଂଚିଲାବେଳକୁ ବେଳ ରତିରତି । ଦୁଇ ତିନୋଟି ପର୍ବତ ଲାଗିଲାଗି ରହି ଗୋଟିଏ ପର୍ବତ-ଶ୍ରେଣୀ ସୃଷ୍ଟି କରିଥାଏ । ସଂଧ୍ୟା ପର୍ଯ୍ୟନ୍ତ ସେ ପର୍ବତମାଳା ମଧ୍ୟରେ

କିଛି ସମୟ ଅନୁସନ୍ଧାନ କଲୁ । କିନ୍ତୁ ବଡ଼ ଗୁମ୍ଫା ପାଇଲୁ ନାହିଁ । ଦିନଯାକ ଚାଲି ଚାଲି ଅତ୍ୟଧିକ କ୍ଳାନ୍ତ ହୋଇଥିବାରୁ ଖିଆପିଆ ସାରି ଗୋଟିଏ ଛୋଟ ଗୁମ୍ଫା ଭିତରେ ଶୋଇପଡ଼ିଲୁ ।

ସକାଳେ ନିଦ ଭାଙ୍ଗିଗଲା । କିଛି ସମୟ ଖୋଜିଲା ପରେ ଗୋଟିଏ ଛୋଟ ପୋଖରୀ ଦେଖିଲୁ । ନିତ୍ୟକର୍ମ ସାରି ଟିକିଏ ଜଳଖିଆ କରିନେଲୁ । ତାପରେ ପୁଣି ଆରମ୍ଭ ହେଲା ଆମର ଅନ୍ୱେଷଣ । ପ୍ରାୟ ଦେଢ଼ଘଣ୍ଟା କାଳ ବୁଲିବା ପରେ ଗୋଟିଏ ଗୁମ୍ଫା ଦେଖିଲୁ । ସେଇଟା ପ୍ରାୟ ବାର ଫୁଟ ଉଚ୍ଚ ଓ ଦଶ ଫୁଟ ଓସାର ହେବ । ଭିତରକୁ ଗଲୁଁ । କଟିକଟିଆ ଅନ୍ଧାରରେ କିଛି ଦେଖାଗଲା ନାହିଁ । ଆମେ ଖୁସି ହୋଇଗଲୁ । ସିତାଂଶୁଙ୍କ ହାତରେ ଗୋଟିଏ ଟର୍ଚ୍ଚ ଥିଲା; ସେ ଆଗରେ ଚାଲିଲେ । ଚଟାଣଟା ଚିକ୍କଣ ପଥର, ମଝିରେ ମଝିରେ ଭାଙ୍ଗିଯିବା ଛଡ଼ା ତାର ଆଉ କିଛି ନ ଥିଲା । ଛାତ ଓ କାନ୍ଥ ବି ଖାଲି ପଥର । ସତେ ଯେମିତି କିଏ ସେଇଟା ଖୋଳି ଖୋଳି ତିଆରି କରିଛି ! ସିତାଂଶୁ ଆଗରେ, ମଝିରେ ମୁଁ, ପଛରେ ଦାଦା— ଏମିତି ଗୋଟାଏ ଧାଡ଼ି ବାନ୍ଧି ଆମେ ଚାଲିଥାଉ । ଅନେକ ବାଟ ଗଲୁ, ମାତ୍ର ଗୁମ୍ଫାର ଶେଷ ନାହିଁ ।

—ଏ ଗୁମ୍ଫାଟା କ'ଣ ସରିଲା ପରି ମନେ ହେଉନାହିଁ ? ମୁଁ କହିଲି । ଦାଦା ସଂଗେ ସଂଗେ ଉତ୍ତର ଦେଲେ—

—ଶୀତକାଳରୁ ରକ୍ଷା ପାଇବାକୁ ହେଲେ ଏତିକ ବଡ଼ ଗୁମ୍ଫା ତ ଆଦୌ ଯଥେଷ୍ଟ ନୁହେଁ । ଆମକୁ ଅନ୍ତତଃ କମ୍‌ରେ ଅଧ ମାଇଲ ଲମ୍ବ ଗୁମ୍ଫାଟାଏ ଖୋଜିବାକୁ ପଡ଼ିବ ।

—ଏଁ...ଏତେ ବାଟ ଯାଏ କ'ଣ ବରଫ ଚାଲି ଆସିବ ? ସିତାଂଶୁ ବିସ୍ମିତ ହୋଇ ପଚାରିଲେ ।

—ହଁ, ଏହା ତ ଖୁବ୍ ସାମାନ୍ୟ ବାଟ । ଗୁମ୍ଫାଦ୍ୱାରରେ ନଆଁ ଜଳୁଥିଲେ ବି ଶୀତକାଳର ପ୍ରଚଣ୍ଡ ଶୀତ ଓ ବରଫପାତରୁ ଆମକୁ ଏହା ରକ୍ଷା କରିପାରିବ ନାହିଁ । ଦାଦା ଉତ୍ତର ଦେଲେ । ଆମେ ନୀରବରେ ଆଗେଇଲୁ । କିଛି ବାଟ ପରେ ଗୁମ୍ଫାଟା ଭିତରକୁ ଗଡ଼ାଣିଆ ହୋଇ ପଶି ଯାଇଛି । ପ୍ରାୟ ଦେଢ଼ ଶହ କି ଦୁଇ ଶହ ଫୁଟ ଗଲା ପରେ ଗୁମ୍ଫାଟା ଖୁବ୍ ସମତଳ ଜଣାଗଲା । ଭିତରଟା ବି ବେଶ୍ ଉଷୁମ ଲାଗୁଥାଏ, ମାତ୍ର ସମ୍ପୂର୍ଣ୍ଣ ଅଂଧାର । ସିତାଂଶୁଙ୍କ ଟର୍ଚ୍ଚ ଆଲୁଅରେ ଆମେ ଯାହା କେବଳ ଦେଖି ପାରୁଥାଉ । କ୍ରମଶଃ ନିଃଶ୍ୱାସ ପ୍ରଶ୍ୱାସ ନେବାରେ କଷ୍ଟ ଲାଗିଲା । ଏତେ ଭିତରେ ଅମ୍ଳଜାନର ପରିମାଣ ଖୁବ୍ କମ୍ ହେବା କଥା । କାନ୍ଥରେ ଟର୍ଚ୍ଚ ଆଲୁଅ ପଡ଼ି ଚକ୍ ଚକ୍ କରୁଥାଏ । ମାତ୍ର ଆମର ସେ ଆଡ଼କୁ ଲକ୍ଷ୍ୟ ନ ଥାଏ । ଗୁମ୍ଫାର ଶେଷ କେଉଁଠି ତାହା ଆବିଷ୍କାର କରିବା ହିଁ ଆମର ଏକମାତ୍ର ଲକ୍ଷ୍ୟ ଥିଲା ।

—ଦାଦା, ତୁମେ ପରା କହୁଥିଲ ମଂଗଳ ଗ୍ରହରେ ପ୍ରାଣୀ ଜୀବନ ସମ୍ଭବପର । ମାତ୍ର ଆମେ ଏପର୍ଯ୍ୟନ୍ତ କୌଣସି ପ୍ରାଣୀ ତ ଦେଖିଲୁ ନାହିଁ ? ମୁଁ ପଚାରି ନୀରବତା ଭାଙ୍ଗିଲି ।

—ସେ କଥା ଏବେ ମୁଁ ସ୍ୱୀକାର କରୁଛି । ମାତ୍ର ପୃଥିବୀରୁ ପର୍ଯ୍ୟବେକ୍ଷଣ କରି ବି ଆମେ ଗୋଟାଏ କଥା ଜାଣିପାରି ନ ଥିଲୁ । ସେଇଟା ହେଲା ଶୀତର ଏତେ ଆଧିକ୍ୟ । ଆମ କଳ୍ପନାଠାରୁ ଏହା ଅଧିକ ହୋଇଗଲା । ଏଣୁ ଏଠି ପ୍ରାଣୀ ଜୀବନ ସମ୍ଭବ ହୋଇପାରିବ ନାହିଁ । ଯେଉଁ ଉଦ୍‌ଭିଦଗୁଡ଼ାକର ଚେର ଅସ୍ୱାଭାବିକ ଭାବରେ ଲମ୍ବା, ସେଇ ଉଦ୍‌ଭିଦ ବଂଚି ରହିଛି । ଆଉ ଏ ଯେଉଁ ବଡ଼ ବଡ଼ ଗଛ ରହିଛି, ସେମାନଙ୍କର ପରମାୟୁ ମାତ୍ର କେତୋଟି ମାସ ।

ମୁଁ ଚୁପ୍ ହୋଇ ରହିଗଲି । ଇସ୍ ! ମଂଗଳ ଗ୍ରହଟା କି ଭୟଙ୍କର !!

କିଛି ବାଟ ଗଲା ପରେ ଗୁମ୍ଫାଟା ସରୁ ହୋଇ ଆସିଲା । ହଠାତ୍ ଟର୍ଚ୍ଚ ଆଲୁଅ ସମ୍ମୁଖରେ ଥିବା ଏକ କାନ୍ଥ ଉପରେ ପଡ଼ିଲା । ଆମେ ଭଲକରି ଦେଖିଲୁ ତାହା ଗୁମ୍ଫାର ଶେଷ ସୀମା । ଦାଦା ପଛରୁ କହିଲେ—

—ଏଁ, ଗୁମ୍ଫାଟା ଏତେ ଶୀଘ୍ର ସରିଗଲା ! ଏଥିରେ ତ ଆମେ ସାରା ଶୀତକାଳ କଟାଇ ପାରିବା ନାହିଁ । କିଛି ଦିନ ରହି ପାରିବା, ହୁଏତ ଘୋର ଶୀତକାଳରେ ବରଫ ଏପର୍ଯ୍ୟନ୍ତ ଚାଲି ଆସିବ ।

ସିତାଂଶୁ ଟର୍ଚ୍ଚ ଘୁରାଉ ଘୁରାଉ କାନ୍ଥ ମୂଳରେ ଆଲୁଅଟା ପଡ଼ିଲା । ସେଠାରେ କ'ଣ ଗୁଡ଼ାଏ ଗଦା ହୋଇଥିବା ଦେଖି ମୁଁ ଚମକି ପଡ଼ିଲି । ଗୋଟାଏ କାଠ ପରି ଦେଖାଯାଉଥାଏ ଗଦାଟା । ଏଣୁ ନଇଁପଡ଼ି ପରୀକ୍ଷା କଲି । ଏ କି ବିଚିତ୍ର କଥା ! ଗୁଡ଼ାଏ ହାଡ଼ ମାଂସ ଶୁଖି ଧଳା ପାଲଟିଯାଇଛି । ଦାଦାଙ୍କୁ ଡାକିଲି । ସେ ହାଡ଼ଗଦାରୁ ଖଣ୍ଡେ ଉଠାଇ ଆଣି ପରୀକ୍ଷା କଲେ । ହାଡ଼ଟା ମଡ଼୍ କରି ଭାଙ୍ଗିଗଲା । ଦାଦା ସେଇଠି ବସିପଡ଼ି ହାଡ଼ଗୁଡ଼ିକ ଖେଳେଇ ପରୀକ୍ଷା କରିବାରେ ଲାଗିଲେ ।

—ତାହାହେଲେ ଡକ୍ଟର୍, ମଂଗଳ ଗ୍ରହରେ ପ୍ରାଣୀଜଗତ ବଂଚି ରହିଛି ? ସିତାଂଶୁ ପ୍ରଶ୍ନ କଲେ ।

ଦାଦା କିଛି ସମୟ ନୀରବରେ ହାଡ଼ଗୁଡ଼ିକ ଓଲଟପାଲଟ କରୁଥାନ୍ତି ।

—ପ୍ରାଣୀଜଗତ ନୁହେଁ ସିତାଂଶୁ, ମଣିଷଜଗତ ମଧ୍ୟ ।

—ଏଁ ! ଆମେ ନୁହେଁପାକ ବସୁନ୍ଧରେ ରୁହଁ ରହିଥାଉ ।

—ହଁ, ଏ ହାଡ଼ଗଦାଟା ଅନ୍ତତଃ ଏଠାରେ ଶହେ ବର୍ଷରୁ ବେଶି କାଳ ପଡ଼ି ରହିଛି । ଦାଦା ହଠାତ୍ ଚୁପ୍ ରହି ହାଡ଼ଗଦାରୁ ଗୋଟାଏ କ'ଣ ଟାଣି ଆଣିଲେ । ସିତାଂଶୁଙ୍କ ହାତରୁ ଟର୍ଚ୍ଚ ନେଇ ସେ ଭଲକରି ଦେଖିଲେ । ଆମେ ଦେଖିଲୁ ତାହା ଗୋଟାଏ ହାର । ଆଗରେ ଭୂତ ଦେଖିଲେ ମୁଁ ହୁଏତ ଏତେ ଚମକି ନ ଥାନ୍ତି । ଦାଦା ତାହାକୁ ହାତରେ ଧରି ଆବେଗମୟ କଣ୍ଠରେ କହିବାକୁ ଲାଗିଲେ—

—ସିତାଂଶୁ, ଏଇ ଦେଖ, ମଣିଷର ଅଳଙ୍କାର । ଏଥିରେ କ'ଣ ଆଉ କିଛି ସନ୍ଦେହ ଅଛି ଯେ, ଏଠାରେ ଦିନେ ଖୁବ୍ ଉନ୍ନତ ଶ୍ରେଣୀର ମଣିଷ ବାସ କରୁ ନ ଥିଲେ ? ଏ ହାରଟା ଯେଉଁ ଧାତୁରେ ତିଆରି ହୋଇଛି ନା କାହିଁକି, ଏଥିରେ ନିଶ୍ଚୟ ଇରିଡ଼ିୟମ୍ ମିଶିଛି । ଏଇ ହାଡ଼ଗଦାଟା ନିଶ୍ଚୟ ମଣିଷ ହାଡ଼ ।

—ଏଁ, ଏଗୁଡ଼ାକ ତେବେ ମଣିଷ ହାଡ଼ ? ମୁଁ ବିସ୍ମୟରେ ପଚାରିଲି ।

—ହଁ, ଏଥିରେ ଆଉ କ'ଣ ସନ୍ଦେହ କରିବାର ଅଛି ? ଏଇ ମଂଗଳରେ ତେବେ ସେମାନେ ଆମ ଅପେକ୍ଷା ଯଥେଷ୍ଟ ଅନୁନ୍ନତ ଥିଲେ ନିଶ୍ଚୟ । ସେମାନଂକର ରୁଚିଜ୍ଞାନ ଥିଲା; ଆଉ ସେମାନେ ନାନା ପ୍ରକାର ଅଳଂକାର ପିନ୍ଧୁଥିଲେ । ଏ ଘଟଣା ଲକ୍ଷ ଲକ୍ଷ ବର୍ଷ ପୂର୍ବର କଥା । ତାପରେ ମଂଗଳ ସୂର୍ଯ୍ୟଠାରୁ କ୍ରମଶଃ ଦୂରକୁ ଚାଲିଗଲା ଓ ମଂଗଳ ଅଧିକରୁ ଅଧିକ ଥଣ୍ଡା ହେବାକୁ ଲାଗିଲା । ପୃଥିବୀରୁ ହଜାର ହଜାର ବର୍ଷ ପୂର୍ବର ବିରାଟ ଜୀବଜନ୍ତୁ ଯେପରି ପ୍ରକୃତିର ଦିନ ଦିନ ପରିବର୍ତ୍ତନ ସହି ନ ପାରି ଲୋପ ପାଇଗଲେ, ସେହିପରି ମଂଗଳ ଗ୍ରହରୁ ମଣିଷ ଜାତି ସେଠା ପ୍ରକୃତିର ପରିବର୍ତ୍ତନକୁ ହୁଏତ

ସହି ପାରିଲ ନାହିଁ । ତେବେ ମନେହୁଏ, ମଣିଷ ପ୍ରକୃତି ସହିତ ସଂଗ୍ରାମ କରି ଶେଷ ପର୍ଯ୍ୟନ୍ତ ବଂଚିଥିଲ । ମାତ୍ର ଶହେ କି ଦେଢ଼ ଶହ ବର୍ଷ ପୂର୍ବେ ଏଇ ମଣିଷମାନେ ମୃତ୍ୟୁବରଣ କରିଥିବେ । କାରଣ ମଂଗଳରେ ବରଫ ଯୁଗ ଶତାଧିକ ବର୍ଷ ଧରି ରହିଥିଲା । ବରଫପାତ ଓ ଶୀତରୁ ଉଦ୍ଧାର ପାଇବାକୁ ସେମାନେ ଠିକ୍ ଆମ ପରି ବଡ଼ ବଡ଼ ଗୁମ୍ଫା ଖୋଜି ବୁଲିଲେ । ଆଉ ଦଳେ ଲୋକ ଏଇ ଗୁମ୍ଫା ଭିତରେ ପଶିଲେ । ମାତ୍ର ଏଇଠି ବି ବଂଚି ପାରିଲେ ନାହିଁ । ପ୍ରବଳ ଥଣ୍ଡା ଓ ବରଫପାତ ଫଳରେ ସେମାନେ ଶୁଖି ଶୁଖି ମୃତ୍ୟୁବରଣ କଲେ । ହାଡ଼ଗୁଡ଼ାକ ସେଇକାଳରୁ ପଡ଼ି ରହିଛି, ମାଂସ ପଚି ସଡ଼ି ନଷ୍ଟ ହୋଇଯାଇଛି ।

ଏଭଳି ଲୋମହର୍ଷଣକାରୀ ବର୍ଣ୍ଣନାରେ ମୋ ଦେହ ଶୀତେଇ ଉଠିଲା । ଓଃ ! କି ଭୟଙ୍କର ସତେ !! ଏହାଛଡ଼ା ଆଉ କ'ଣ ବା ହୋଇପାରେ ? ଦାଦାଙ୍କର ଏହି ଐତିହାସିକ ଆବିଷ୍କାରର ଶ୍ରେଷ୍ଠ ପ୍ରମାଣ ହାଡ଼ଗଦା ଆଡ଼କୁ ମୁଁ ନୀରବରେ ଚାହିଁ ରହିଥାଏ...... ।

## ଉପାୟ ମିଳିଗଲା

କିଛି ସମୟ ପରେ ଆମେ ଫେରିଲୁ । ମାତ୍ର ସେତେବେଳକୁ କାହା ମୁହଁରେ ଭାଷା ନ ଥାଏ । ସମସ୍ତଙ୍କ ଆଖି ଆଗରେ ମୃତ୍ୟୁର ବିକଟ ରୂପ ନୃତ୍ୟ କରୁଥାଏ । ତାହାହେଲେ ମଂଗଳରୁ ଉଦ୍ଧାର ପାଇବା ପାଇଁ ଆଉ କ'ଣ କୌଣସି ବାଟ ନାହିଁ ? ଆମେ ମନେ ମନେ ଭାବିନେଲୁ ମୃତ୍ୟୁ ହିଁ ଆମ ଦୁଃସାଧ୍ୟ ଅଭିଯାନର ଏକମାତ୍ର ପୁରସ୍କାର । ଭୋଷ୍ଟକ୍‌କୁ ଫେରିବାକୁ ବସିଲୁ । ଆଉ ଗୁମ୍ଫା ଆଖିରେ ପଡ଼ୁ ନ ଥାଏ । ଭୋଷ୍ଟକ୍‌ରେ ପହଂଚିବା ପରେ ଆଉଥରେ ବରଂ ଅନ୍ୟ ଦିଗରେ ଅନୁସନ୍ଧାନ କରାଯାଇପାରେ ।

ଷ୍ଟେସନ୍ ଆଉ ପ୍ରାୟ ପାଞ୍ଚ ମାଇଲ ଦୂରରେ ଥାଏ । ନାନା ଆଲୋଚନା କରି ଆମେ ଆଗେଇ ଯାଉଥାଉ । ହଠାତ୍ କେତେଜଣ କଥାବାର୍ତ୍ତା ହେଉଥିବା ପରି ମନେହେଲା । ଦାଦା ବି ଶୁଣି ପାରିଲେ । କାନ ଡେରିଲୁ । ଦୁଇ ଜଣ ଲୋକ ଇଂରେଜୀରେ କଥାବାର୍ତ୍ତା କରୁ-ଥିବା ପରି ମନେହେଲା ।

—ବୋଧହୁଏ ଏଇ ଦିଗରେ ଶୂନ୍ୟଯାନଟା ଅଛି ।

—ହଁ, ଏଇ ପାହାଡ଼ ସେପଟେ ସେଇଟା ଥିବା ପରି ଜଣା-ଯାଉଛି । ସେମାନେ ଆଗରୁ ଆସି ଯାଇଛନ୍ତି ।

କଥାବାର୍ତ୍ତା ବନ୍ଦ ହୋଇଗଲା । ମୁଁ ଆଶ୍ଚର୍ଯ୍ୟ ହୋଇଗଲା । ଏ ତ ଜନ୍ ଗ୍ଲେନ୍‌ଙ୍କ କଣ୍ଠସ୍ୱର ! ତାଙ୍କ ସହ ଆଉ ଜଣେ କିଏ ?

ଦାଦା ସେଇଠି ଠିଆ ହୋଇଗଲେ । ମୋର ମନେ ପଡ଼ିଗଲା ଲେନନ୍‌ଗ୍ରାଡ୍‌ରେ ଜନ୍ ଗ୍ଲେନ୍‌ଙ୍କର ଉତ୍ତେଜିତ ସ୍ୱର, ତାଂକ ଔଦ୍ଧତ୍ୟ । ମନଟା ତାଂକ ପ୍ରତି ବିରକ୍ତ ହେବା ସଂଗେ ସଂଗେ କ୍ଷୀଣ ଆଶାରେଖା ମନ ଭିତରେ ଜାଗି ଉଠିଲା । କିଛି ସମୟ ପରେ ଦାଦା କହିଲେ—

—ସିତାଂଶୁ, ଶ୍ୟାମଲେନ୍ଦୁ, ଚାଲ ଜନ୍ ଗ୍ଲେନ୍‌ଙ୍କ ସହ କଥାବାର୍ତ୍ତା ହେବା । ଦାଦା ଆଗେ ଆଗେ ଚାଲିଲେ । ଆମେ ତାଂକୁ ଅନୁସରଣ କଲୁ ।

ଜନ୍ ଗ୍ଲେନ୍ ଆମକୁ ଦେଖିବା ପୂର୍ବରୁ ଆମେ ତାଙ୍କୁ ଦେଖି-ପାରିଲୁ । ତାଂକ ସାଙ୍ଗରେ ଆଉ ଜଣେ ଚାଲି ଚାଲି ଆସୁଥିଲେ । ଦାଦା ହଠାତ୍ ଜନ୍ ଗ୍ଲେନ୍‌ଙ୍କ ଆଗକୁ ଯାଇ ପଚାରିଲେ—

—ଆପଣ ବୋଧହୁଏ ଆମ ଶୂନ୍ୟଯାନ ଖୋଜୁଛନ୍ତି ?

ମଂଗଳ ଗ୍ରହରେ ହଠାତ୍ ଅପ୍ରତ୍ୟାଶିତ ଭାବରେ ମଣିଷର କଣ୍ଠସ୍ୱର ଶୁଣି ଜନ୍ ଗ୍ଲେନ୍ ଚମକି ପଡ଼ିଲେ । ତା' ପର ମୁହୂର୍ତ୍ତରେ ଦାଦା ଓ ଆମ୍ଭମାନଂକୁ ଦେଖି ଖୁସି ହୋଇ ଦାଦାଙ୍କୁ କୁଣ୍ଢେଇ ପକେଇଲେ । ସିତାଂଶୁଙ୍କୁ ଓ ମୋତେ ସମ୍ଭାଷଣ କରସାରି କହିଲେ—

—ହଁ, ଆପଣମାନଙ୍କ ସହିତ ମୁଁ ମୋ ସହଯାତ୍ରୀଙ୍କୁ ପରିଚୟ କରେଇ ଦିଏ । ଏହାଙ୍କ ନାମ ରବର୍ଟ ଫକ୍ନର୍ । ଏ ମୋର ମୁଖ୍ୟ ଇଞ୍ଜିନିୟର୍ ଓ ସହଯାତ୍ରୀ । ଆମେ ଦୁହେଁ ମଂଗଳରେ ଅବତରଣ କରିଛୁ ।

—ଆପଣ କେବେ ପହଂଚିଲେ ଏଠାରେ ? ଦାଦା ପ୍ରଶ୍ନ କଲେ ।

—ଏଇ ସପ୍ତାହେ ହେଲା, ମାତ୍ର ଆମର ବହୁତ ଡେରି ହୋଇଗଲା ।

—ହଁ, ମୁଁ ତ ଠିକ୍ ତାହା କହିବାକୁ ଯାଉଥିଲି । ମଂଗଳରେ ପହଂଚିବା ପରେ ଏହାର ଋତୁଚକ୍ର ବିଷୟରେ ଆମେ ଗୋଟିଏ ପୂର୍ଣ୍ଣ ଧାରଣା ପାଇଲୁ । ଯେତେବେଳକୁ ଶୀତକାଳ ଆସିବା ଉପରେ । ଦାଦା କହିଲେ ।

—ହଁ, ଏହା ସତ । ଶୀତକାଳରେ ଏଠାରେ ଏତେ ଶୀତ ହୁଏ ବୋଲି ମୁଁ ବି ଆଗରୁ ଜାଣି ନ ଥିଲି । ଦେଖୁଛି, ଆସନ୍ତା ସପ୍ତାହକ ଭିତରେ ମଂଗଳ ଗ୍ରହରୁ ନ ଗଲେ ଆଉ ଉପାୟ ନାହିଁ ।

ଦାଦା ନୀରବ ରହିଲେ । ଆମ ଦୁର୍ଦ୍ଦଶା କଥା ବୋଧହୁଏ ସେ ଚିନ୍ତା କରୁଛନ୍ତି । ସିତାଂଶୁ ପଚାରିଲେ—

—ଆଚ୍ଛା ମିଷ୍ଟର୍ ଜନ୍ ଗ୍ଲେନ୍, ଆପଣ ସେ ନୂଆ ଧାତୁଟାର ସନ୍ଧାନ ପାଇଥିବେ ତ ? ମାନେ ଆମେ ଯାହାକୁ ଇରନସ୍କ କହୁ ।

ଜନ୍ ଗ୍ଲେନ୍ ଉତ୍ସାହିତ ହୋଇ କହିଲେ—

—ହଁ, ଏଇ କାଲି ମାତ୍ର ଖବରଟି ପାଇଲି । ଆପଣ ପାଇଛନ୍ତି ନା ?

—ହଁ, ଆମେ ଅନେକ ଦିନରୁ ପାଇଲୁଣି ।

ଦେଖିଲି, ଜନ୍ ଗ୍ଲେନ୍‌ଙ୍କର ପୂର୍ବର ସେହି ଶତ୍ରୁତା ଭାବ ଆଉ ନାହିଁ । ବେଶ୍ ବନ୍ଧୁ ପରି ବ୍ୟବହାର କରୁଥାନ୍ତି । ଦାଦା ହଠାତ୍ ନୀରବତା ଭାଙ୍ଗିଲେ—

—ଜନ୍ ଗ୍ଲେନ୍, ଆପଣଙ୍କର ଲେନିନ୍‌ଗ୍ରାଡ୍‌ରେ ସେହିଦିନ କଥା ମନେଥିବ ନିଶ୍ଚୟ । ସେହିଦିନ ବାସ୍ତବିକ୍ ବର୍ଥଲର୍ ଯୋଗୁଁ ଆମେ ଖୁବ୍ ଉତ୍ତେଜିତ ହୋଇ ପଡ଼ିଥିଲୁ । ତେଣୁ ଆପଣ ଆମଠାରୁ ଉପଯୁକ୍ତ ବ୍ୟବହାର ପାଇପାରି ନ ଥିଲେ । ଜନ୍ ଗ୍ଲେନ୍ କଥା ମଝିରେ ହଠାତ୍ କହିଲେ—

—ଆଃ ! ଡକ୍ଟର୍, ସେ ପୁରୁଣା କଥାଗୁଡ଼ାକ ଆଉ କାହିଁକି ମନେ ପକାଉଛନ୍ତି ? ଆମ୍ଭେମାନେ ସବୁ ମଣିଷ । ମଣିଷ ପ୍ରବୃତ୍ତିର ଦାସ । ଏଣୁ ଆମର ଭୁଲ ହେବା ସ୍ୱାଭାବିକ । ଦେଖନ୍ତୁ, ଆମେ ପୃଥିବୀର ଅତି ଉନ୍ନତ ଧରଣର ମଣିଷ ହୋଇ ମଙ୍ଗଳର ବାୟୁମଣ୍ଡଳରେ ହିଂସା, ଦ୍ୱେଷ ଆଦି ଘୃଣ୍ୟ ପ୍ରବୃତ୍ତିଗୁଡ଼ିକଦ୍ୱାରା ସଂକ୍ରମିତ ହେବା ନିତାନ୍ତ ଅଶୋଭନୀୟ ।

—କିନ୍ତୁ ମୁଁ ସେ କଥା କହୁନି । ଆପଣ କହିଥିଲେ, ଆମେ ଦିନେ ଆପଣଙ୍କର ସାହାଯ୍ୟ ପ୍ରାର୍ଥନା କରିବୁ । ଆପଣ ଠିକ୍ କହିଥିଲେ । ଆଜି ସେହି ଦିନ ପହଞ୍ଚି ଯାଇଛି ।

—ଅର୍ଥାତ୍ ? ଜନ୍ ଗ୍ଲେନ୍ ଖୁବ୍ ଆଶ୍ଚର୍ଯ୍ୟ ହୋଇ ପ୍ରଶ୍ନ କଲେ । ଦାଦା କିଛି ସମୟ ରହି କହିଲେ—

—ମଂଗଳରେ ଓହ୍ଲାଇବା ବେଳେ ଆମ ମୋଟରଟା ହଠାତ୍ ବିଗିଡ଼ି ଗଲା । ଫଳରେ ମଂଗଳ ଦେହରେ ଖୁବ୍ ଜୋର୍‌ରେ ଆମ ଯାନଟା ପିଟି ହୋଇଗଲା । ସେଇ ଧକ୍କା ଯୋଗୁଁ ମୋଟରଟା ସମ୍ପୂର୍ଣ୍ଣ ଅକାମୀ ହୋଇପଡ଼ିଛି । ଆମେ ଅନେକ ଚେଷ୍ଟା କରି ସୁଦ୍ଧା ତାକୁ ସଜାଡ଼ି ପାରିନାହୁଁ । ସେଥିପାଇଁ ଅନ୍ତତଃ ଜୀବନ ବଂଚାଇବା ପାଇଁ ଶୀତକାଳ କଟାଇବାକୁ ଗୋଟାଏ ଗୁମ୍ଫା ଖୋଜୁଥିଲୁ ।

—ଆରେ, ଆପଣ ତ ତାହାହେଲେ ଖୁବ୍ ବିପଦରେ ପଡ଼ି ଯାଇଛନ୍ତି ।

ଜନ୍ ଗ୍ଲେନ୍ ଚିନ୍ତାକୁଳ ଭାବରେ କହିଲେ । ସେ କିଛି ସମୟ କ'ଣ ଚିନ୍ତା କଲେ । ଦାଦାଙ୍କ ଅନୁରୋଧରେ ସମସ୍ତେ ପାଖରେ ପଡ଼ିଥିବା କେତୋଟି ପଥର ଉପରେ ବସିଲୁ । ମୁଁ ମନେ ମନେ ଭାବୁଥାଏ, ସେ ବୋଧହୁଏ ଆମକୁ ସାହାଯ୍ୟ କରିବାକୁ କୁଣ୍ଠାବୋଧ କରୁଛନ୍ତି । ଯଦି ଜନ୍ ଗ୍ଲେନ୍ ସେଥିପାଇଁ ରାଜି ନ ହୁଅନ୍ତି···କିଛି ସମୟ ପରେ ଜନ୍ ଗ୍ଲେନ୍ କହିଲେ—

—ମୋ ଯାନରେ ମୁଁ ଆପଣମାନଙ୍କୁ ନେଇଯାଇ ପାରନ୍ତି, କିନ୍ତୁ······ଦାଦା ଅନୁରୋଧ କରିବା ସ୍ୱରରେ କହିଲେ—

—ଅନ୍ତତଃ ଶ୍ୟାମଳେନ୍ଦୁ, ରିନା ଆଉ ନିନା ପାଉ୍‌ଲେଭ୍‌ନା ପୃଥିବୀକୁ ଫେରିବା ଦରକାର । ସେମାନେ ନିର୍ଦ୍ଦୋଷ । ଆପଣଙ୍କର ସେମାନେ କୌଣସି କ୍ଷତି ତ କରି ନାହାନ୍ତି । ହଠାତ୍ ଜନ୍ ଗ୍ଲେନ୍ ହସିଉଠି କହିଲେ—

—ଆରେ, ଡକ୍‌ଟର୍ ମହାପାତ୍ର, ଆପଣ ସେ ସବୁ କଥା ଭାବୁଛନ୍ତି କାହିଁକି ? ମୁଁ ତ ସେ ସବୁ କଥା ଆଦୌ ବିଚାରକୁ ନେଉନାହିଁ । ଆମ୍ଭେମାନେ ସମସ୍ତେ ପୃଥିବୀକୁ ଫେରିବା, ଏଠି

କେବେ ରହିବା ନାହିଁ । ଆମେମାନେ ସୃଷ୍ଟିର ଏକ ମହାନ୍ ଜୀବ-ସ୍ରଷ୍ଟାର ଏକ ମହାନ୍ ସର୍ଜନା । ଆମ ସମସ୍ତଙ୍କର ବାସଭୂମି ଏକ—ପୃଥିବୀ । ଆମେମାନେ ପଶୁ ନୋହୁଁ । ମଣିଷର ହୀନତାକୁ ମୁଁ ଘୃଣା କରେ । ଆମେ ଏକାଠି ପୃଥିବୀକୁ ଫେରିବା । ତାପରେ ପୃଥିବୀର ବିପଥଗାମୀ ମଣିଷସମାଜକୁ ନୂତନ ଭ୍ରାତୃତ୍ୱର ନୂତନ ବନ୍ଧୁତା ବାଣୀ ଶୁଣାଇବା । ଆମେ ସମସ୍ତେ ଏକ—ଏକ ବିଶ୍ୱ-ପିତାଙ୍କର ସନ୍ତାନ—ଗୋଟିଏ ଜାତି । ଆମ ଜୀବନ ଧ୍ୱଂସ ପାଇଁ ସୃଷ୍ଟି କରାଯାଇ ନାହିଁ । ମଣିଷର ଜ୍ଞାନ, ବିବେକ, ବୁଦ୍ଧି, ଆପଣା ଆପଣା ଭିତରେ ବଳ କଷାକଷି ପାଇଁ ନୁହେଁ । ମଣିଷର ସବୁ କିଛି ମଣିଷପଣିଆ ଏହି ପୃଥିବୀକୁ ନୂଆ କରି, ସୁନ୍ଦର କରି ଗଢ଼ିବାପାଇଁ । ଯୁଗ ଯୁଗ ଧରି ମଣିଷସମାଜର ମହାପୁରୁଷଗଣ ନିଜ ନିଜର ଜୀବନ ବିନିମୟରେ ଏଇ କଥା ଶିଖେଇ ଯାଇଛନ୍ତି ଆମକୁ । ଜନ୍ ଗ୍ଲେନ୍‌ଙ୍କ କଣ୍ଠରୁଦ୍ଧ ହୋଇଗଲା । ଦାଦା ଅତି ଆନନ୍ଦରେ ଜନ୍ ଗ୍ଲେନ୍‌ଙ୍କୁ କୁଣ୍ଢେଇ ପକେଇଲେ । କିଛି ସମୟ ପାଇଁ କାହା ପାଟିରୁ କଥା ବାହାରିଲା ନାହିଁ । ଜନ୍ ଗ୍ଲେନ୍ ପୁଣି କହିଲେ—

—ଡକ୍‌ଟର୍··ହଠାତ୍ ଦାଦା କହିଉଠିଲେ—

—ମୋ ନାଁ ଚନ୍ଦ୍ରଶେଖର ମହାପାତ୍ର । ତୁମେ ଅନ୍ତତଃ ଚନ୍ଦ୍ରଶେଖର ବୋଲି ଡାକିବା ଉଚିତ । ଜନ୍ ଗ୍ଲେନ୍ ହସି ହସି କହିଲେ—

—ବେଶ୍, ଭଲ କଥା । ଚନ୍ଦ୍ରଶେଖର, ଆମେ ତ ତୁମର ଯାନକୁ ବାହାରିଥିଲୁ । ଚାଲ···

ଜନ୍ ଗ୍ଲେନ୍‌ଙ୍କ ବ୍ୟବହାର ମତେ ଖୁବ୍ ଭଲ ଲାଗିଲା । ପରସ୍ପର ଭିତରେ ଏମିତି ସ୍ନେହ ମମତା ଥିଲେ ଆଜି ପୃଥିବୀ ଖାଲି ନାନା ବିବାଦ, ନାନା ଗଣ୍ଡଗୋଳ, ହିଂସା ଦ୍ୱେଷର ନର୍କ ଭୂମିରେ

ପରିଣତ ହୋଇ ନ ଥାନ୍ତା । ମଣିଷ ଆଜ କ୍ଷମତା ପାଇଁ, ଆପଣାର ବଡ଼ିମା ପ୍ରଚାର ପାଇଁ ଏମିତି ପାଗଳ ହୋଇ ଉଠୁ ନ ଥାନ୍ତା । ଗୋଟାଏ ଦୀର୍ଘ ନିଃଶ୍ୱାସ ବାହାରି ଆସିଲା । ଏହାର ଶେଷ କେଉଁଠି କେଜାଣି ! ସିତାଂଶୁ ରବର୍ଟ ଫକ୍‌ନର୍‌ଙ୍କ ସହ ଆଲୋଚନା କରୁଥାନ୍ତି । ସିତାଂଶୁ ତାଙ୍କ ସହ ଜନ୍ ଗ୍ଲେନ୍‌ଙ୍କ ଯାନକୁ ଯିବାକୁ ବାହାରିଲେ । କାରଣ ଭୋଷ୍ଟକ୍‌ର ଯନ୍ତ୍ରପାତି ସବୁ ନଷ୍ଟ ହୋଇ-ଯାଇଥିଲା । ଏଣୁ ଜନ୍ ଗ୍ଲେନ୍‌ଙ୍କ ଯାନର ଯନ୍ତ୍ରପାତି ଦେଖି ସେ ବିଷୟରେ ଆଲୋଚନା କରିବାର ଇଚ୍ଛା ସିତାଂଶୁଙ୍କର ଥିଲା । ଜନ୍ ଗ୍ଲେନ୍ କହିଲେ—

—ମୁଁ ଭାବୁଥିଲି, ଆମେ ମାତ୍ର ଦୁଇଜଣ ପୃଥିବୀରୁ ଆସିଛୁ । ଫେରିଲାବେଳକୁ ସାଥିରେ ଆଠଜଣ କେମିତି ଯିବା ? ହଉ ଛାଡ଼, ସେ କଥା ଦେଖିବା । ସବୁ ଠିକ୍ ହୋଇଯିବ । ହଁ ରବର୍ଟ, ତୁମେ ପଅରଦିନ ଦିନ ଦୁଇଟା ସୁଦ୍ଧା ମଙ୍ଗଳ ଛାଡ଼ିବା ପାଇଁ ଯୋଗାଡ଼ କରିବ । ସେଥିରେ ଆଠ ଜଣ ଫେରିବା । ତେଣୁ କେବଳ ଅତ୍ୟାବଶ୍ୟକ ଯନ୍ତ୍ରପାତି ରଖି ଅନ୍ୟ ସବୁ ବାହାର କରିଦେବ । ଆସନ୍ତାକାଲି ସନ୍ଧ୍ୟା ସୁଦ୍ଧା ମୁଁ ଭୋଷ୍ଟକ୍‌ରୁ ସମସ୍ତଙ୍କୁ ଧରି ଆମ ଯାନକୁ ଫେରିବି ।

ସିତାଂଶୁ ଓ ଫକ୍‌ନର୍ ତାଙ୍କ ଯାନକୁ ଗଲେ । ଆମେ ଜନ୍ ଗ୍ଲେନ୍‌ଙ୍କ ସଙ୍ଗରେ ଧରି ଭୋଷ୍ଟକ୍‌କୁ ଗଲୁ । ମାତ୍ର ମୋ ମନରେ ସନ୍ଦେହ ବଢ଼ିଗଲା—ଯେଉଁ ଯାନ ମାତ୍ର ଦୁଇ ଜଣଙ୍କୁ ଧରି ଆସିଥିଲା, ସେ ଆଠ ଜଣ ଲୋକଙ୍କୁ କେମିତି ନେବ ?

## ଏଥର ଫେରିବୁ

ସେଦିନ ନିନା ଖିଆପିଆ ସାରି ଶୀଘ୍ର ଶୋଇପଡ଼ିଲା । ଦାଦାଙ୍କ ରୁମ୍‌ରେ ସମସ୍ତେ ବସି ଆଲୋଚନା ଆରମ୍ଭ କଲେ । ମୁଁ

ଓ ଶରା ସେ ଆଲୋଚନା ଶୁଣିବାର କୌତୂହଳକୁ ଦମନ କରି ନ ପାରି ସେଇଠି ବସିଲୁ । ଜନ୍ ଗ୍ଲେନ୍ ଆଲୋଚନା ଆରମ୍ଭ କଲେ—

—ମୁଁ ସ୍ୱୀକାର କରୁଛି, ବଟ୍‌ଲର୍ ଆପଣଙ୍କ ମୋଟରର ଗୋଟାଏ ନକ୍‌ସା ମୋତେ ଦେଇଥିଲେ । ସେଇ ନକ୍‌ସା ଅନୁସାରେ ମୋ ମୋଟରଟାକୁ ତିଆରି କରିଛି ।

—ଗୁଡ଼୍, ଗୁଡ଼୍ । 'ବର୍ତ୍ତମାନ'ଟା ହିଁ ଆମ ପକ୍ଷରେ ସବୁଠାରୁ ବେଶି ମୂଲ୍ୟବାନ୍ । ହଁ, ଆପଣ କେତେ ଇରିନସ୍କ ପାଇଛନ୍ତି ? ପୋପ୍‌ଭର୍ ପଚାରିଲେ ।

—ବିଶେଷ କିଛି ନୁହେଁ, ଖୁବ୍ ସାମାନ୍ୟ । ସେଗୁଡ଼ାକ ଦୁର୍ଲଭ ନା ! ଜନ୍ ଗ୍ଲେନ୍ ଉତ୍ତର ଦେଲେ । ପୋପ୍‌ଭର୍ କହିଲେ—

—ଆପଣ ବୋଧହୁଏ ଜାଣି ନ ଥିବେ, ଏପର୍ଯ୍ୟନ୍ତ ମୁଁ ଗୋଟିଏ ଜିନିଷ ଜାଣି ପାରିନି । ସେଇଟା ହେଲା ଲୁହା ବା ସୀସାରୁ ଇରିନସ୍କ ସାହାଯ୍ୟରେ ସୁନା ବାହାର କରିବାର ସହଯୋଗୀ ପଦାର୍ଥ ।

—ଓହୋ ! ସେଇଟା କିଛି ଗୋଟାଏ ବଡ଼ କଥା ନୁହେଁ । ମୁଁ ଅନ୍ୟ ବିଷୟରେ ଗବେଷଣା କରୁ କରୁ ସେଇଟା ହଠାତ୍ ଆବିଷ୍କାର କରି ପକେଇଲି । ସେଇଟା ହେଲା ପାରଦ ।

—ତେବେ ଅନୁପାତଟା ? ଜନ୍ ଗ୍ଲେନ୍ କହିଲେ—

—ଗୋଟାଏ ଟନ୍ ତରଳା ଲୁହା ସହ ଏକ ଆଉନ୍‌ସ ଇରିନସ୍କ, ଆଉ ପାଞ୍ଚ ପାଉଣ୍ଡ ପାରଦ ମିଶାଇବାକୁ ପଡ଼ିବ । ତାପରେ ସେତିକ ଭଲରୂପେ ମିଶାଇ ଧୀରେ ଧୀରେ ଥଣ୍ଡା କରିବାକୁ ହେବ; ପ୍ରାୟ ସପ୍ତାହକ ପରେ ମିଳିବ ଗୋଟାଏ ଟନ୍ ଖାଣ୍ଟି ସୁନା !

ମୁଁ ସ୍ୱପ୍ନରେ ଏ ଦୁଇଜଣ ବୈଜ୍ଞାନିକଙ୍କ ଗୃହଁ ରହିଥାଏ । କିଛି ତରଳ ଲୁହା, ସାମାନ୍ୟ କିଛି ଇରିନମ୍ଭ, ଆଉ କିଛି ପାରଦ; ବାସ୍, ଆମେ ପାଇଗଲୁ ଅପରିମିତ ସୁନା ! କୁବେର ପାଲଟି-ଯିବାକୁ ଆଉ କେତେ ଦିନ ବାକି ?

ତାପରେ ସେମାନେ ନାନା ବୈଜ୍ଞାନିକ ତଥ୍ୟ ଉପରେ ଆଲୋଚନା କରିବାକୁ ଲାଗିଲେ । ମୁଁ କିଛି ବୁଝି ନ ପାରି ଉଠି ଆସି ଶୋଇଲି ।

ସକାଳ ହେଲା । ସେଇ ଦିନଟା ମଂଗଳ ଗ୍ରହରେ ଓ ହୋଷ୍ଟିକ୍‌ରେ ଆମର ଶେଷ ଦିନ । ସଂଧ୍ୟା ପୂର୍ବରୁ ଜନ୍ ଗ୍ଲେନ୍‌ଙ୍କ ଯାନରେ ପହଂଚିବାକୁ ହେବ । ସେଥିପାଇଁ ଯେତିକି ନିହାତି ଯିବାର କଥା, ସେତିକି ନେଇ ବଂଧାବଂଧି କଲୁ । କିଛି କଫି, ବିସ୍କୁଟ, ଇରିନମ୍ଭ, ଦାଦା ଓ ପୋପ୍‌ଭିରଙ୍କର ପର୍ଯ୍ୟବେକ୍ଷଣ ବିବରଣୀ, ପୋଷାକପତ୍ର ଆଦି ନେବାକୁ ଠିକ୍ କଲୁ । ହୋଷ୍ଟିକ୍‌ରେ ଶେଷ ଥର ପାଇଁ ପେଟେ ପେଟେ ଖାଇନେଲୁ । ଜନ୍ ଗ୍ଲେନ୍ ଏ ଫୁଲ ଗଛ କଥା ଜାଣି ନ ଥିଲେ । ଆମଠାରୁ ଏ କଥା ଶୁଣି ଆଶ୍ଚର୍ଯ୍ୟ ହୋଇଗଲେ । ସବୁ କାମ ସାରି ହୋଷ୍ଟିକ୍ ଗ୍ରାଉଣ୍ଡ୍‌ଲିବେଲକୁ ଦିନ ଆଠଟା ଟପିଗଲା ।

ମୁଁ ଓ ରିନା କାନ୍ଧରେ ଗୋଟାଏ ଗୋଟାଏ ବୁଜୁଲା ପକେଇ ଧୀରେସୁସ୍ଥେ ସମସ୍ତଙ୍କ ପଛରେ ଚାଲିଥାଉ । ମାତ୍ର ସବୁବେଳେ ମତେ ଗୋଟିଏ କଥା ବିବ୍ରତ କରୁଥାଏ—ଜନ୍ ଗ୍ଲେନ୍‌ଙ୍କ ଯାନ ଆମ ସମସ୍ତଙ୍କୁ କିମିତି ବହିନେବ ? ବାଟରେ ଗୋଟାଏ ଘ୍ରୋଟ ଝରଣା ପଡ଼ିଲା । ଆମେ ତା ଭିତରେ ପଶି ପାର ହୋଇଗଲୁ । ହଠାତ୍ କ'ଣ ମନ ହେଲା, ଝରଣାରେ ମୁହଁ ଲଗାଇ ମୁଁ କିଛି ପାଣି ପିଇଲି । କହିଲି—

—ରିନା, ମଂଗଳ ଗ୍ରହକୁ କିଛି ପାଣି ନେଇଆଅ ! ଆଉ ପାଇବ ନାହିଁ । ସେ ହସିଲା ।

—ଆମେ ଫେରିଲାବେଳକୁ କିଛି କୋଇଲା ନେଇଯିବୁ ବୋଲି ଭାବିଥିଲୁ, କିନ୍ତୁ ବାଟରେ ପାଇଲୁ ନାହିଁ । ଶୂନ୍ୟଯାନ ପାଖରେ ପହଂଚିଲାବେଳକୁ ପ୍ରାୟ ଦିନ ଘୁରିଛି । ଜିନିଷପତ୍ର କାଢ଼ି କିଛି ସମୟ ବିଶ୍ରାମ ନେଲୁ ତାହାରେ । ରବର୍ଟ ଫକ୍‌ନର୍ ଓ ସିତାଂଶୁ ଆମ୍ଭମାନଙ୍କ ପାଇଁ ଖାଇବା ଯୋଗାଡ଼ କରିଥିଲେ । ସଂଧ୍ୟା ପୂର୍ବରୁ ଖାଇନେଲୁ । ଜିନିଷପତ୍ର ସବୁ ଲଦାଲଦି କରିଦେଲୁ । ଆମେ ଦେଖିଲୁ, ଜନ୍ ଗ୍ଲେନ୍‌ଙ୍କ ଇଗଲ୍‌ରେ (ତାଂକ ଯାନର ନାମ ଇଗଲ୍) ଦୁଇଟା ମହଲା । ତଳ ମହଲାଟି ଇଂଜିନ୍ ଘର । ଉପରଟି ରହିବା ଘର । ତଥାପି ଉପର ମହଲାରେ ବି ଅନେକ ଯନ୍ତ୍ରପାତି ଥାଏ । ଯଥା—ରାଡାର ଓ ବିଭିନ୍ନ ମାପ ଯନ୍ତ୍ର । ତଳ ମହଲାରୁ ଉପର ମହଲାକୁ ଯିବାକୁ ସିଡ଼ି ଲାଗିଛି । ମୁଁ ଦେଖିଲି, ଏ ବ୍ୟବସ୍ଥା ଭୋଷ୍ଟକ୍‌ର ବ୍ୟବସ୍ଥା ଅପେକ୍ଷା ଢ଼େର ଭଲ । କାରଣ ଆମ ଯାନର ସିଡ଼ିଟା ବାହାରେ ଲାଗିଥିଲା । ମାଟି ଉପରୁ ସିଡ଼ିରେ ପଚିଶ ଫୁଟ ଉଠିଲା ପରେ ଯାନରେ ପହଂଚି ପାରୁଥିଲୁ ।

ସେଦିନ ମଂଗଳରେ ଶେଷ ରାତିଟା କଟେଇଲୁ ଖୁବ୍ ଆନନ୍ଦରେ । ସକାଳ ହେଲା । ଓହ୍ଲେଇ ଆସି ନିତ୍ୟକର୍ମ କଲୁ । ରବର୍ଟ ଫକ୍‌ନର୍ ଓ ସିତାଂଶୁ ଶେଷ ଥର ପାଇଁ ପରୀକ୍ଷା କରିବାକୁ ଉପରକୁ ଗଲେ । ପ୍ରାୟ ପନ୍ଦର ମିନିଟ୍ ପରେ ଫେରି-ଆସିଲେ ସେମାନେ । ମୁଁ ଓ ରିନା ଘୁରିଆଡ଼େ ଆଖି ବୁଲେଇ ନେଲୁ । ଦାଦା ବୋଧହୁଏ କ'ଣ ଚିନ୍ତା କରୁଥିଲେ । ମାତ୍ର ସେ କ'ଣ ଭାବୁଥିଲେ, ତାହା ଆମେ ଜାଣି ନ ଥିଲୁ । ଦାଦା ଗୋଟାଏ ପଥର ଉପରେ ବସି କହିଲେ, "ଜନ୍ ଗ୍ଲେନ୍ କହିଂତି ଇଗଲ୍

ଆମ ସମସ୍ତଙ୍କୁ ବହିନେଇ ପାରିବ, ମାତ୍ର ମୋର ବିଶ୍ୱାସ ହେଉନି । ଦେଖାଯାଉ, କ'ଣ ହେଉଛି । ହଁ ଶୁଣ, ଶ୍ୟାମଲେନ୍ଦ୍ର, ଆମର ଅଧିକା ପୋଷାକପତ୍ର, ବିସ୍କୁଟ ଟିଣ, କଫି ଆଦି ସବୁ ବାହାର କରି ଆଣ । ଯାହା ନିତାନ୍ତ ଦରକାର, କେବଳ ସେତିକ ରଖିବା ।"

ଆମେ ସେଇଆ କଲୁ । ଅଧିକ ଜିନିଷଗୁଡ଼ାକ ଗୋଟିଏ ଗାତରେ ରଖି ତା ଉପରେ ଏକ ପଥର ଲଦି ଦେଲୁ । ଦାଦା ତଥାପି ଖୁବ୍ ଚିନ୍ତାକୁଳ ଭାବରେ ଏପଟସେପଟ ହେଉଥାନ୍ତି । ହଠାତ୍ ଜନ୍ ଗ୍ଲେନ୍‌ଙ୍କ ଆଗକୁ ଯାଇ କହିଲେ—

—ଜନ୍ ଗ୍ଲେନ୍ ! ଆମେ ସବୁ ଇଗଲ୍‌ରେ ଯାଇପାରିବା ବୋଲି ମୋର ଆଦୌ ବିଶ୍ୱାସ ହେଉ ନାହିଁ । ଦେଖ, ଏ ଦୁଃସାହସ ଫଳରେ ସମସ୍ତଙ୍କ ଜୀବନ ଯେମିତି ବିପଦର ସମ୍ମୁଖୀନ ନ ହୁଏ ।

ଜନ୍ ଗ୍ଲେନ୍ ଖୁବ୍ ଆଶାବାଦୀ ହୋଇ ପଡ଼ିଥିଲେ । ସେ କହିଲେ—

—ନା ନା, ମୋ ଯାନରେ ଅନେକ ଶକ୍ତି ମହଜୁଦ ଅଛି ।

—ଆଚ୍ଛା, ଆମ୍ଭମାନଙ୍କ ଭିତରୁ ଜଣେ ଅନ୍ତତଃ ରହିଗଲେ ତ ଅନ୍ୟମାନଙ୍କ ଜୀବନ ନିରାପଦ ହୋଇପାରନ୍ତା । ଦାଦା କହିଲେ ।

ତାଙ୍କ କଥା ନ ସରୁଣୁ ମିନା ପାଟି କଲା—

—ନା ନା, ଏଠି କେହି ରହିବେନି ।

ଜନ୍ ଗ୍ଲେନ୍ ମଧ୍ୟ ଦାଦାଙ୍କ ଏ ପ୍ରସ୍ତାବକୁ ନାପସନ୍ଦ କରି କହିଲେ—

—ଆମେ ସମସ୍ତେ ଇଗଲ୍‌ରେ ନିଶ୍ଚୟ ଯାଇପାରିବା । ସେଥିପାଇଁ ବ୍ୟସ୍ତ ହୁଅନା ଚନ୍ଦ୍ରଶେଖର । ସେ ଆମ ଆଡ଼କୁ ଚାହିଁ କହିଲେ—

—ଆମେ ଠିକ୍ ଦିନ ଦୁଇଟା ସାତ ମିନିଟ୍‌ରେ ମଂଗଳ ଛାଡ଼ିବା । ଏବେ ହେଲା ଦିନ ପ୍ରାୟ ଦଶଟା । ତୁମେ ସବୁ ସଜବାଜ ହୋଇଯାଅ ।

## ଦାଦା ଉଭାନ

ଆମେ ମଂଗଳ ଛାଡ଼ିବା ପର୍ଯ୍ୟନ୍ତ ବାହାରେ ବସିଥିଲୁ । ଇଗଲ୍ ମଂଗଳ ଛାଡ଼ିବାକୁ ଆଉ ପ୍ରାୟ ଅଧଘଣ୍ଟାଏ ବାକି ଅଛି । ଆମେ ଉପରକୁ ଚଢ଼ିଲୁ । ମାତ୍ର ଦାଦା ତଥାପି ବିବ୍ରତ ଦେଖାଯାଉଥାନ୍ତି । ଯାନ ଭିତରେ ସେ କହିଲେ—

—ଜନ୍, ମୁଁ ଏବେ ବି କହୁଛି ଇଗଲ୍ ଆମ ସମସ୍ତଙ୍କୁ ବହି-ନେଇ ପାରିବନି । ଅନ୍ତତଃ ଜଣେ ଯଦି ଏଠାରେ ରହି ଯାଆନ୍ତା···

—ନା ନା, ଏଠି ଏ ମୃତ୍ୟୁପୁରୀରେ ଆମେ କାହାକୁ ଛାଡ଼ି ଯିବାନି । ସେ କଥା ହେବନି । ଇଗଲ୍ ବହିନେଇ ପାରିବ । ତୁମେ ବ୍ୟସ୍ତ ହୁଅନା ଚନ୍ଦ୍ରଶେଖର । ତାଂକ କଥାକୁ ମିନା ସଂଗେ ସଂଗେ ଦୃଢ଼ ସମର୍ଥନ ଜଣାଇଲା । ମଂଗଳ ଗ୍ରହରେ ପୁଣି କାହାକୁ ଛାଡ଼ି ଯିବାକୁ ହେବ ! ବାପ୍‌ରେ ବାପ୍ !

ଦାଦା ହୁଏତ ଆଉ କ'ଣ କହିବାକୁ ଯାଉଥିଲେ, ମାତ୍ର ରିନାର ଚିତ୍କାରରେ ଆମେ ଚମକି ପଡ଼ିଲୁ । ସେ ଇଗଲ୍ ଦ୍ୱାର ପାଖରେ ଠିଆ ହୋଇଥିଲା । ଉତ୍ତର ଦିଗକୁ ଆଙ୍ଗୁଠି ଦେଖାଇ ଆମ ଦୃଷ୍ଟି ଆକର୍ଷଣ କଲା । ଆମେ ଦେଖିଲୁ, ପ୍ରାୟ ଚାରି ମାଇଲ ଦୂରରେ ଗୋଟାଏ ବିରାଟ କୁହୁଡ଼ି ମେଘ ଆମ ଯାନ ଆଡ଼କୁ ମାଡ଼ି ଆସୁଛି । ଜନ୍ ଗ୍ଲେନ୍ ତରତର ହେଲେ । ସେ କୁହୁଡ଼ି ପହଞ୍ଚିବା ପୂର୍ବରୁ ଆମକୁ ନିଶ୍ଚୟ ମଂଗଳ ଛାଡ଼ିବାକୁ ହେବ । ତଳ ମହଲର କବାଟ ବନ୍ଦ କରି ଉପରକୁ ଉଠିଲୁ ।

ରବର୍ଟ ଫକ୍‌ନର୍ ଆମ ସମସ୍ତଙ୍କୁ ଖଣ୍ଡେ ଖଣ୍ଡେ ଦଉଡ଼ି ଦେଲେ ବେଲ୍‌ଟର କାମ ଚଳାଇବାକୁ । ବେଲ୍‌ଟ ବଦଳରେ ଦଉଡ଼ି ଅଣ୍ଟାରେ ବାନ୍ଧିବାକୁ ପଡ଼ିବ । କାରଣ ଜନ୍ ଗ୍ଲେନ୍ ତ ଆଠ ଜଣଙ୍କ ପାଇଁ ବେଲ୍‌ଟ ବ୍ୟବସ୍ଥା କରି ନ ଥିଲେ । ଯାନ ଦେହରୁ ନାନା ଯନ୍ତ୍ରପାତି ଖୋଲି ଫୋପାଡ଼ି ଦିଆଯାଇଥାଏ ଇଗଲ୍‌କୁ ଉଶ୍ୱାସ କରିବାକୁ । ଆମେ ସେହି କଣାରେ ଦଉଡ଼ି ବାନ୍ଧି ସଜାଡ଼ି ହୋଇ ବସିଲୁ । ମାତ୍ର ଦାଦା କ'ଣ ଭାବୁଥାନ୍ତି ଠିଆହୋଇ । ଜନ୍ ଗ୍ଲେନ୍ ତାଂକ ପାଖକୁ ଯାଇ କହିଲେ—

—ଏ କ'ଣ ଚନ୍ଦ୍ରଶେଖର ? ଏମିତି ଚୁପ୍‌ଚାପ୍ ଠିଆହୋଇ ରହିଲ କାହିଁକି ? ଦାଦା ହଠାତ୍ କ'ଣ ଭାବି ଚଂଚଳ ହୋଇଉଠିଲେ । କହିଲେ—

—ଜନ୍, ଗୋଟାଏ କଥା……

—କ'ଣ ? ବିସ୍ମୟରେ ଜନ୍ ଗ୍ଲେନ୍ ପଚାରିଲେ—

—ମୁଁ ଭାବୁଛି, ତଳ ମହଲ୍‌କୁ ଯାଇ ଗୋଟାଏ କଥା ପରୀକ୍ଷା କରିବି । ତୁମେ ଯାନ ଚଳେଇ ଦେବ । ସେଥିପାଇଁ ଚିନ୍ତା କରିବା ଦରକାର ନାହିଁ । ଜନ୍ ଗ୍ଲେନ୍ କିଛି ବୁଝି ନ ପାରି ପରି କହିଲେ—

—ପରୀକ୍ଷା !! ସେଠାରେ କି ପରୀକ୍ଷା କରିବ ଚନ୍ଦ୍ରଶେଖର ?

—ମତେ ଖାଲି ମୋ କାମଟା କରିବାକୁ ଦିଅନା, ଦାଦା ଏକରକମ ଜୋର୍ କଲେ ।

—ହଉ ଯାଅ, ମାତ୍ର ଖୁବ୍ ସାବଧାନ ଥିବ । ତୁମକୁ ଆଉ ସାବଧାନ କରିବା ଦରକାର ନାହିଁ । ଦାଦା ଗୋଟାଏ ଗହିରିଆ 'ହୁଁ' କରି ତଳକୁ ଓହ୍ଲାଇଗଲେ । ମତେ ବଡ଼ ଡର ମାଡ଼ିଲା । ହଠାତ୍ ପାଟିରୁ ବାହାରିଗଲା—

—ଦା...ଦା...

ଦାଦା ମତେ ଚାହିଁଲେ । ବୋଧହୁଏ ମୋ ମନ କଥା ସେ ବୁଝି ପାରିଲେ । ମତେ କେମିତି ଗୋଟାଏ ଉଦାସିଆ ଅଥଚ ବେଶ୍ ସହଜ ଦୃଷ୍ଟିରେ ଚାହିଁ କହିଲେ—

—ଶ୍ୟାମଳେନ୍ଦୁ, ତୋର ଭୟ କରିବାର କାରଣ କିଛି ନାହିଁ । ମୋର ଏ ମୂଲ୍ୟବାନ୍ ପରୀକ୍ଷାଟା ତୁ ପରେ ବୁଝିପାରିବୁ । ତାପରେ ସେ ତଳକୁ ଚାଲିଗଲେ । ମତେ କେମିତି କେମିତି ଲାଗିଲା । ଦାଦା ଅସ୍ୱାଭାବିକ ଭାବରେ ପ୍ରଶାନ୍ତ ଦେଖା ଯାଉଥାନ୍ତି ।

ଦାଦା ତଳକୁ ଚାଲିଗଲେ । ଆମେ ଯେ ଯାହା ସ୍ଥାନରେ ବସି ରହିଲୁ । ଫକ୍‌ନର୍ ଓ ଜନ୍ ଗ୍ଲେନ୍ ଯନ୍ତ୍ର ପାଖରେ ଥାଆନ୍ତି । ଦୁଇଟା ପରେ ପରେ ଇଂଜିନ୍ ଗର୍ଜି ଉଠିଲା । ମାତ୍ର ଏ କ'ଣ ? ଯାନ ଯେ ଉଠୁନାହିଁ । ଜନ୍ ଗ୍ଲେନ୍‌ଙ୍କ ଆଡ଼କୁ ଚାହିଁଲି । ସେ ବି ଭୟ କରିଗଲେଣି । ଫକ୍‌ନର୍ ଇଂଜିନ୍‌କୁ ନିୟନ୍ତ୍ରଣ କରିବାକୁ ଖୁବ୍ ବ୍ୟସ୍ତ ଥାଆନ୍ତି । କେତୋଟି ମୁହୂର୍ତ୍ତ ଭିତରେ ଇଗଲ୍ ଉପରକୁ ଉଠିଲା । ମୋ ଦେହ ଝିମ୍ ଝିମ୍ ଲାଗିଲା । ଆଖି ବୁଜିହୋଇ ଆସିଲା । ଆଖି ଖୋଲିଲାବେଳକୁ ଦେଖିଲି ଅନ୍ୟମାନେ ବେଶ୍ ସୁସ୍ଥ ହୋଇ ଗଲେଣି । କିଛି ସମୟ ପରେ ନିନା ମୋତେ କପେ କଫି ଦେଲା । ଖୁବ୍ ଭଲ ଲାଗିଲା ସେତକ ପିଇଦେବା ପରେ ।

ଚାରିଆଡ଼େ ଆଖି ବୁଲାଇ ଆଣିଲି, କିନ୍ତୁ ଦାଦା କାହାନ୍ତି ? ଭାବିଲି, ବୋଧହୁଏ ଆସି ନାହାନ୍ତି । କେତେ ମିନଟ୍ ଗଲା, ତଥାପି ଦାଦାଙ୍କ ଦେଖା ନାହିଁ । ଜନ୍ ଗ୍ଲେନ୍‌ଙ୍କୁ ପଚାରିଲି । ସେ କହିଲେ—

—ଚନ୍ଦ୍ରଶେଖର ତ ଏପର୍ଯ୍ୟନ୍ତ ଆସି ନାହାନ୍ତି । ବୋଧହୁଏ ନିକଟରେ ଆସିଯିବେ । ଓଃ ! ଆଉ ଯଦି ମାତ୍ର ଜଣେ ଲୋକ ଅଧିକା ହୋଇଥାନ୍ତେ, ତେବେ ଇଗଲ୍ ଆଦୌ ଉଠାଇ ପାରି ନ

ଥାନ୍ତି । ଓଜନଟା ଇଗଲ୍‌ର ବଳ ସହିତ ଏକଦମ ସମାନ ହୋଇଗଲା । ପୁଣି କେତେ ମିନିଟ୍ କଟିଗଲା, ତଥାପି ଦାଦା ଯେ ଫେରିଲେ ନାହିଁ ! ସିତାଂଶୁ କହିଲେ—

—ଦେଖ ତ ଜନ୍, ଡକ୍‌ଟର୍ କାହିଁକି ଏପର୍ଯ୍ୟନ୍ତ ଫେରିଲେ ନାହିଁ । ସେ ବୋଧହୁଏ କିଛି ଗୋଟାଏ ଆଶଙ୍କା କରୁଥିଲେ । କିଛି ସମୟ ଭାବି ଜନ୍ ଟେଗ୍ଲନ୍ କହିଲେ—

—ସିତାଂଶୁ, ତୁମେ ଯାଅ ତ ଟିକେ ତଳକୁ । ଦେଖି ଆସିବ, ଚନ୍ଦ୍ରଶେଖର ଯେ ଏପର୍ଯ୍ୟନ୍ତ କ'ଣ ପରୀକ୍ଷା ଚଳେଇଛନ୍ତି, ମୁଁ ଆଦୌ ବୁଝି ପାରୁନ ।

ଉପର ମହଲାର କବାଟ ଖୋଲି ସିତାଂଶୁ ସିଡ଼ିରେ ତଳକୁ ଓହ୍ଲାଇଲେ । ମୁଁ ବି ଉତ୍କଣ୍ଠିତ ହୋଇ ରହିଥାଏ । ପ୍ରଫେସର୍ ପୋପ୍‌ଭର୍ କହିଲେ—

—ସତରେ, ଚନ୍ଦ୍ରଶେଖର ଜଣେ ବିଚିତ୍ର ଲୋକ । କେତେବେଳେ କ'ଣ ମୁଣ୍ଡକୁ ଢୁକେ କେଜାଣି, ଏମିତି ବିଚିତ୍ର କଥା କହନ୍ତି । ଆମେ କେହି ସେ କଥା ବୁଝି ପାରୁନା । ମାତ୍ର ପରେ ତାଙ୍କ କଥାର ଗୁରୁତ୍ୱ ଜଣାପଡ଼େ ।

ଏହାପରେ କେହି କିଛି କହିଲେନି । ଖୁବ୍ ନୀରବ । ସମସ୍ତେ ଦାଦାଙ୍କୁ ଅପେକ୍ଷା କରୁଥିଲୁ ।

କିଛି ସମୟ ପରେ ସିତାଂଶୁ ଫେରି ଆସିଲେ । ମୁହଁଟା ତାଙ୍କର ଶେତା ପଡ଼ିଯାଇ ଥାଏ । ମୋ ମନକୁ ପାପ ଛୁଇଁଲା । ଦାଦା କାହାନ୍ତି ? ସିତାଂଶୁ କାହାକୁ କିଛି ନ କହି ମୋ ଆଡ଼କୁ ଆସୁଥାନ୍ତି । ଅନ୍ୟମାନେ ଆଶ୍ଚର୍ଯ୍ୟ ହୋଇ ଆତଂକରେ ତାଂକୁ ଚାହିଁ ରହିଥାନ୍ତି । ମୋ ପାଖରେ ପହଂଚି ଖୁବ୍ ଧୀର ସ୍ୱରରେ କହିଲେ—

—ଶ୍ୟାମଳେନ୍ଦୁ, ତୁମ ଦାଦା ନାହାନ୍ତି !

—କ'ଣ କହୁଛ ସିତାଂଶୁ ? ମୁଁ ଚତ୍କାର କରଉଠିଲି ।

—ହଁ, ତୁମ ଦାଦା ଚାଲେ ନାହାନ୍ତି । ମଂଗଳ ଗ୍ରହ ଛାଡ଼ିବାର ଠିକ୍ ପୂର୍ବ ମୁହୂର୍ତ୍ତରେ ସେ ଆମକୁ ଛାଡ଼ି ଚାଲି ଯାଇଛନ୍ତି ।

—କ'ଣ କିଛି ଦୁର୍ଘଟଣା ଘଟିଲା ? ମୋ କଣ୍ଠ ରୁଦ୍ଧ ହୋଇ ଆସୁଥାଏ । ଛଳ ଛଳ ଆଖିରେ ସିତାଂଶୁ କହିଲେ—

—ନଅ, ଏଇ ଚିଠିଟା ପଢ଼ ।

ସିତାଂଶୁଙ୍କ ହାତରୁ କାଗଜ ଖଣ୍ଡି ଆଣି ଖୋଲିଲି । ଦାଦାଙ୍କ ଚିଠି । ମାତ୍ର ଦୁଇ ଧାଡ଼ି ଖଣ୍ଡେ ପଢ଼ିଛି କି ନାହିଁ, ଆଉ ପଢ଼ି ପାରିଲି ନାହିଁ । ଅପ୍ ଅପ୍ ହୋଇ ଲୁହ ପଡ଼ି ଚିଠିଟା ଓଦା ହୋଇଗଲା । ଆଉ ସମ୍ଭାଳି ପାରିଲି ନାହିଁ । ବସି ପଡ଼ି ଦୁଇ ହାତରେ ମୁହଁ ଲୁଚାଇ କଇଁକଇଁ ହୋଇ କାନ୍ଦି ଉଠିଲି । ଚିଠିକୁ ଗୋଟେଇ ନେଇ ଜନ୍ ଗ୍ଲେନ୍ ପଢ଼ିଲେ—

ସ୍ନେହର ଶ୍ୟାମଳେନ୍ଦୁ,

ଶେଷରେ ମୁଁ ନଜେ ମଂଗଳରେ ରହିଯିବାକୁ ଠିକ୍ କଲି । ମୋ ଓଜନ କମିଗଲେ ଇଗଲ୍ ତୁମ୍ଭମାନଙ୍କୁ ନରାପଦରେ ପହଂଞ୍ଚାଇ ପାରିବ । ଏଇ କୁହୁଡ଼ି ମାଡ଼ି ଆସିବା ପୂର୍ବରୁ ମୁଁ ବୋଧହୁଏ ହୋଷ୍ଟକ୍‌ରେ ପହଂଚ ପାରିବ ନାହିଁ । ଏଇଠି କେଉଁଠି ଆତ୍ମରକ୍ଷା କରିବାକୁ ପଡ଼ିବ । ଯଦି ଆମ ବ୍ୟାଟେରୀ ସରି ନ ଯାଏ ତେବେ ମୁଁ ଅନ୍ତତଃ ଶୀତକାଳଟା ବଂଚ ପାରିବ । ଯଦି ତାହା ନ ହୁଏ, ତେବେ ତୁମେ ସବୁ ମିଶି ମୋ ଅସମ୍ପୂର୍ଣ୍ଣ କାର୍ଯ୍ୟ ସମ୍ପୂର୍ଣ୍ଣ କରିବ ।

ହଉ, ବିଦାୟ ନେଉଛି ସମସ୍ତଙ୍କର ଶୁଭ କାମନା କରି । ଜନ୍ ଗ୍ଲେନ୍‌ଙ୍କୁ ମୋ ଆନ୍ତରିକ ଅଭିନନ୍ଦନ ଓ ଶୁଭେଚ୍ଛା କହିବୁ । ତୋ ପାଇଁ ଜୀବନରେ ବିଶେଷ କିଛି କରି ପାରିଲିନି ବୋଲି ଦୁଃଖ

ଲାଗୁଛି । ଶେଷରେ ତୁମ ସମସ୍ତଙ୍କଠାରୁ ବିଦାୟ ମାଗି ପ୍ରକୃତ ସହ ଲଢ଼ିବାକୁ ଏଇଠି ରହିଗଲି ।

ତୋର ଶୁଭେଚ୍ଛୁ
ଦାଦା

ଈଗଲ୍ ଖୁବ ବେଗରେ ମହାଶୂନ୍ୟରେ ଛୁଟି ଚାଲିଛି । ମୋ ଛାତି ଭିତରେ ବି ହୃତ୍‌ପିଣ୍ଡଟା ତାଳ ପକାଇ ମତେ ପିଟି ଚାଲିଛି···

## ପୃଥିବୀରେ ପହଂଚିଲୁ

ଈଗଲ୍‌ରେ ନୀରବତା । ସଂପୂର୍ଣ୍ଣ ନୀରବତା । କେବଳ ଇଂଜିନ୍‌ର ଘର୍ ଘର୍ ଶବ୍ଦ ଛଡ଼ା ଆଉ କିଛି ଶୁଣାଯାଉ ନ ଥାଏ । କିଛି ସମୟ ପରେ ଆଖି ପୋଛି ବସିଲି । ପୋପ୍‌ଭିର୍ ମୋ ପାଖକୁ ଆସି କହିଲେ—

—ଶ୍ୟାମଳେନ୍ଦୁ, ଦୁଃଖ କରୁଛ ? ନା, ଦୁଃଖ କରି କିଛି ଲାଭ ନାହିଁ । ତୁମ ଦାଦା ଜଣେ ବଡ଼ ବୈଜ୍ଞାନିକ ଥିଲେ । ଆଜି ସେ ପ୍ରମାଣ କରିଦେଇଗଲେ ଯେ, ସେ ଜଣେ ମହାପୁରୁଷ । ହୁଏତ ଏହି ମହାଶୂନ୍ୟ ଯାତ୍ରାଟା ଖୁବ୍ ସାଧାରଣ କଥା ହୋଇଯିବ । ସେତେବେଳେ ଲୋକେ ହୁଏତ ଦାଦାଙ୍କୁ ଜଣେ ବୈଜ୍ଞାନିକ ଭାବରେ ଭୁଲିଯିବେ, କିନ୍ତୁ ଜଣେ ମହାପୁରୁଷ ଭାବରେ ଲୋକେ ତାଂକୁ ଯୁଗ ଯୁଗ ଧରି ମନେ ପକାଉଥିବେ । ଲୋକମୁଖରେ ତାଂକର ଅଜସ୍ର ପ୍ରଶଂସା—ଏ ଅପୂର୍ବ ଆତ୍ମତ୍ୟାଗର କାହାଣୀ ଖେଳି ବୁଲୁଥିବ । ତୁମେ ସେଥିପାଇଁ ଗର୍ବ ଅନୁଭବ କର ଶ୍ୟାମଳେନ୍ଦୁ । ଥରେ ଭାବିଲ, ତୁମ ମନ କେମିତି ଅପୂର୍ବ ଆନଂଦରେ ପୂର୍ଣ୍ଣ ହୋଇଯିବ ?

ପୋପ୍‌ଭର୍‌ଙ୍କ ମୁହଁକୁ ଚାହିଁଲି । ଆଖି ଲୁହରେ ଢ଼ଳ ଢ଼ଳ । ତଥାପି ଗୋଟାଏ ଅପୂର୍ବ ଆନନ୍ଦ ଓ ଜ୍ୟୋତିରେ ତାଙ୍କ ମୁହଁ ଉଦ୍‌ଭାସିତ । ଖୁବ୍ ସୁନ୍ଦର ଦେଖା ଯାଉଥାଏ । ପୋପ୍‌ଭର୍ ହିଁ ଦାଦାଙ୍କର ସବୁଠୁ ବେଶି ପୁରୁଣା ସହକର୍ମୀ । ଏଣୁ ଦାଦାଙ୍କୁ ସେ ଯେମିତି ଜାଣନ୍ତି, ହୁଏତ ମୁଁ ବି ଜାଣେନା ।

ରାତିରେ ଶୋଇବାକୁ ଯେତେ ଚେଷ୍ଟା କଲେ ମଧ୍ୟ ଶୋଇ ପାରିଲି ନାହିଁ । ଆମ ଯାନ ପରି ଏ ଯାନରେ ବି ମହାଶୂନ୍ୟର ମାଧ୍ୟାକର୍ଷଣ ଶକ୍ତି ବିହୀନତା ଦୂର କରିବାକୁ ଚୁମ୍ବକ ବ୍ୟବସ୍ଥା ଥାଏ । ଏଣୁ କିଛି ଅସୁବିଧା ହେଲି ନାହିଁ । ଆମ ଶୂନ୍ୟଯାତ୍ରା ନିର୍ବିଘ୍ନରେ ଚାଲିଲି । ବେଳେବେଳେ ନନା ଓ ରିନା ମୋତେ ଆଶ୍ୱାସନା ଦେବାକୁ ଚେଷ୍ଟା କରନ୍ତି । ମାତ୍ର ବାହାରେ ବାହାରେ ମୁଁ ସବୁ ଭୁଲି ଯିବାର ଅଭିନୟ କଲେ ବି ମନ ଭିତରେ କେତେ ବେଦନା ଅନୁଭବ କରୁଥାଏ, ତାହା କେବଳ ମୁଁ ଜାଣୁ ଥାଏ । ପୋପ୍‌ଭର୍ ବେଳେବେଳେ ମୋ ପାଖରେ ଆସି ବସନ୍ତି, ମାତ୍ର କିଛି କହନ୍ତି ନାହିଁ । ସେ ପାଖରେ ଥିଲେ ମୋତେ ଅନେକଟା ଭଲ ଲାଗେ ।

ପୃଥିବୀରେ ପହଞ୍ଚିବା ସମୟ ହୋଇଗଲା । ଆମେ ପୁଣି ସେଇ ଲେନିନ୍‌ଗ୍ରାଡ଼୍‌ର ରହସ୍ୟପୁରୀରେ ହିଁ ଅବତରଣ କରିବୁ । ମାତ୍ର ରହସ୍ୟପୁରୀର ପ୍ରାଣକେନ୍ଦ୍ର ଦାଦାଂକୁ ହରାଇ······

—ତମେ ସେଠି ପହଂଚି କ'ଣ କରିବ ଶ୍ୟାମଳେନ୍ଦୁ ? ନନା ପଚାରିଲା ।

ମୁଁ ତା ମୁହଁକୁ ଚାହିଁଲି । ଖୁବ୍ ସରଳ ବିଶ୍ୱାସୀ ଝିଅଟିଏ । କହିଲି—

—ମୁଁ ? ମୁଁ ଦାଦାଙ୍କର ଅଭିଯାନ ଚଳେଇ ରଖିବି । ପୋପ୍‌ଭର୍ ଓ ସିତାଂଶୁଙ୍କ ସାହାଯ୍ୟରେ ଆଉ ଗୋଟିଏ ମହାକାଶ ଷ୍ଟେସନ୍

ତିଆରି କରି ପୁଣି ମଂଗଳ ଗ୍ରହକୁ ଯାଇ ଦାଦାଙ୍କୁ ଉଦ୍ଧାର କରିବ । ତୁମେ ସବୁ ସିନା ବିଶ୍ୱାସ କରୁନ ଯେ ଦାଦା ଆଉ ବଂଚିଥିବେ ବୋଲି, ମାତ୍ର ମୁଁ ଜାଣେ, ଦାଦା ପୃଥିବୀକୁ ଛାଡ଼ି କଦାପି ମରି ପାରିବେନି । ନା ନା, କେବେ ନୁହେଁ । ଷ୍ପେସ୍କାର୍‌ରେ ଜଣେ ଲୋକ ପାଇଁ ଯଥେଷ୍ଟ ଖାଦ୍ୟ ଓ ପୋଷାକ ଅଛି । ସେ କୁହୁଡ଼ିଟା ଚପିଗଲେ ଦାଦା ଶୀତକାଳ କଟେଇ ପାରିବେ ବୋଲି ମୋର ସଂପୂର୍ଣ୍ଣ ବିଶ୍ୱାସ ରହିଛି । ସିତାଂଶୁ ଛଳ ଛଳ ଆଖିରେ କହିଲେ—

—ହଁ, କିନ୍ତୁ ଏ ପ୍ରଚଣ୍ଡ ଶୀତ ସହି ଯେ ଡକ୍‌ଟର୍ ଷ୍ପେସ୍କାର୍‌ରେ ତିଷ୍ଠିପାରିବେ, ମୋର ବିଶ୍ୱାସ ହେଉନି । କିନ୍ତୁ ମୁଁ କାହା କଥା ଶୁଣିବାକୁ ପ୍ରସ୍ତୁତ ନ ଥିଲି । ମୁଁ ମୋ ବିଶ୍ୱାସରେ ଖୁବ୍ ଦୃଢ଼ ଥିଲି । ହଠାତ୍ ଜନ୍ ଗ୍ଲେନ୍ ପାଟିକରି ଆମକୁ ସାବଧାନ କରିଦେଲେ—

—ସମସ୍ତେ ବେଲ୍‌ଟ ବାଂଧି ପକାଅ । ଆମେ ଏବେ ପୃଥିବୀର ବାୟୁମଣ୍ଡଳରେ ପ୍ରବେଶ କରୁଛୁ । ମୁଁ ବ୍ୟୋମ-ଛତା ଖୋଲିଲା-ବେଳେ ଇଗଲ୍ ଖୁବ୍ ଜୋର୍‌ରେ ଥରଉଠିବ, ସାବଧାନ ଥିବ । ଆମେ ଦଉଡ଼ି ବେଲ୍‌ଟ ବାନ୍ଧି ଖୁବ୍ ଦୃଢ଼ ଭାବରେ ବସି ରହିଲୁ । ହଠାତ୍ ବ୍ୟୋମ-ଛତା ଖୋଲିଲା । ପ୍ରଚଣ୍ଡ ଭାବରେ ଇଗଲ୍ ଥର-ଉଠିଲା । ଆମେ ଆଗରୁ ଏଥିପାଇଁ ସାବଧାନ ଥିଲୁ । ଏଣୁ କାହାର କିଛି କ୍ଷତି ହେଲା ନାହିଁ । ଇଗଲ୍‌ର ଗତି କମି ଆସିଲା । ଦୂରତା ନିର୍ଦ୍ଦେଶକ ଯନ୍ତ୍ରକୁ ଚାହିଁଥାଏ; ଦୂରତା କମି ଆସୁଥାଏ—ହଜାରେ ଫୁଟ—ନଅ ଶହ—ଆଠ ଶହ—ସାତ ଶହ·····

ଇଗଲ୍‌ର ଇଂଜିନ୍ ବନ୍ଦ ହୋଇଗଲାଣି । ପୃଥିବୀ ଓ ପବନର ମହାସମୁଦ୍ର ଭିତରେ ଇଗଲ୍ ପହଁରି ଚାଲିଛି ପୃଥିବୀରେ ଓହ୍ଲେଇ ପଡ଼ିବାକୁ । ତାର ଗତି ଯଥେଷ୍ଟ ମନ୍ଥର ହୋଇଗଲାଣି—ଚାରି ଶହ ଫୁଟ—ତିନି ଶହ ଫୁଟ—ଦୁଇ ଶହ ଫୁଟ—ଶହେ—

—ସମସ୍ତେ ଖୁବ୍ ଦୃଢ଼ ଭାବରେ ବସିଥାଅ—ଜନ୍ ଗ୍ଲେନ୍‌ଙ୍କର ସତର୍କବାଣୀ । କେତୋଟି ସେକେଣ୍ଡ ଭିତରେ ଯାନର ଗତି ବନ୍ଦ ହୋଇଗଲା । କିଛି ସମୟ ଥର ଥର ଇଗଲ୍ ନିଶ୍ଚଳ ହୋଇଗଲା । ଜନ୍ ଗ୍ଲେନ୍ ଆନନ୍ଦରେ କହିଲେ—

—ବନ୍ଧୁଗଣ ! ଆମେ ବର୍ତ୍ତମାନ ନିରାପଦରେ ପୃଥିବୀରେ ପହଂଚ ଯାଇଛୁ ।

ଇଗଲ୍‌ରୁ ଓହ୍ଲାଇଲୁ । ତଳ ମହଲ୍ କବାଟ ଖୋଲିବା ସଂଗେ ସଂଗେ ଉଜ୍ଜ୍ୱଳ ସୂର୍ଯ୍ୟାଲୋକରେ ଆଖି ଝଲସି ଉଠିଲା । ସେତେବେଳେ ସମୟ ତିନିଟା । ସବୁ ଦୁଃଖ ସତ୍ତ୍ୱେ ମୁଁ ତଳକୁ ଓହ୍ଲାଇପଡ଼ି ଅତି ପ୍ରିୟ ପୃଥିବୀ ଉପରେ ଆନନ୍ଦରେ ପାଦ ଦେଲି । ସେଇ ପୁରୁଣା କୋଠାବାଡ଼ି, ପୁରୁଣା ବଗିଚା, ସବୁ କିଛି ପୁରୁଣା; ସେମାନେ ମୋ ଆଖିକୁ ଖୁବ୍ ସୁନ୍ଦର ଦେଖା ଯାଉଥାନ୍ତି । ସେଠାରେ ଜମା ହୋଇଥିବା ଲୋକମାନେ ଆମକୁ ଘେରିଗଲେ । ଆଲେକ୍-ଜାଣ୍ଡର ଫେଡେରେଙ୍କୋ ମୋତେ କୁଣ୍ଢାଇ ପକାଇଲେ । ସମସ୍ତଙ୍କୁ ଯଥାବିଧି ସମ୍ଭାଷଣ ହୋଇଗଲା । ଯାନରୁ ସମସ୍ତେ ଓହ୍ଲାଇ ଆସିଲେଣି । ଫେଡେରେଙ୍କୋ ଚାରିଆଡ଼େ ଆଖି ବୁଲେଇ କାହାକୁ ଖୋଜୁଥାନ୍ତି । ମୁଁ ବୁଝି ପାରିଲି ଯେ ସେ ଦାଦାଙ୍କୁ ଖୋଜୁଛନ୍ତି । ହଠାତ୍ ଖୁବ୍ ଆଶ୍ଚର୍ଯ୍ୟ ହୋଇ ପଚାରିଲେ—

—ଆରେ, ଏଇଟା ତ ଆମ ଭେଷ୍ଟକ୍ ନୁହେଁ ।

—ନା, ଏଇଟା ଜନ୍ ଗ୍ଲେନ୍‌ଙ୍କର ଇଗଲ୍ । ମୁଁ କହିଲି ।

—ଏଁ, ଜନ୍ ଗ୍ଲେନ୍ !! ଯିଏ ଗୁପ୍ତଚର ଲଗାଇ ଆମକୁ ଧ୍ୱଂସ କରିଦେବାକୁ ଚେଷ୍ଟା କରୁଥିଲେ ? ଫେଡେରେଙ୍କୋଙ୍କ କଣ୍ଠରେ ଅଦ୍ଭୁତ ସ୍ୱରରେ ବିସ୍ମୟ ।

—ହଁ, ମାତ୍ର ଆମ୍ଭେମାନେ ଏବେ ଘନିଷ୍ଠ ବନ୍ଧୁ । ସେ ଅଞ୍ଚଳ ଅନେକ ବଦଳି ଯାଇଛି ।

—କିନ୍ତୁ ଆମ ଭେଷ୍ଟକ୍ ଗଲ୍ କୁଆଡ଼େ ? ଦୀର୍ଘ ନିଃଶ୍ୱାସ ପକେଇ କହିଲି—

—ମଂଗଳରେ ଧକ୍କା ଖାଇ ସେଇଟା ଅକାମୀ ହୋଇଗଲା । ଆମ ମୋଟରଟା ଏକଦମ ଅଚଳ । ଭାବିଥିଲୁ, ଆମେ ଆଦୌ ପୃଥିବୀକୁ ଫେରି ପାରିବୁ ନାହିଁ । ଭାଗ୍ୟକୁ ଜନ୍ ଗ୍ଲେନ୍‌ଙ୍କ ସଂଗରେ ସାକ୍ଷାତ୍ ହୋଇଗଲା । ତାଂକରି ଯାନରେ ପୃଥିବୀକୁ ଫେରିଲୁ ।

—କିନ୍ତୁ ଡକ୍‌ଟର୍ ଚନ୍ଦ୍ରଶେଖର ମହାପାତ୍ର କାହାନ୍ତି ? କିଛି ସମୟ ପରେ କହିଲି—

—ସେ ଆସି ନାହାନ୍ତି । ମଂଗଳରେ ରହିଗଲେ ।.

—ଅର୍ଥାତ୍ ? ଆଲେକ୍‌ଜାଣ୍ଡର ଫେଡେରେଙ୍କୋ ଖୁବ୍ ଆଶ୍ଚର୍ଯ୍ୟ ହୋଇଗଲେ ।

—ଜନ୍ ଗ୍ଲେନ୍‌ଙ୍କ ମହାକାଶ ଇଗଲ୍‌ଟା ଖୁବ୍ ସାନ । ସେଥିରେ କେବଳ ଦୁଇ ଜଣ ମଂଗଳକୁ ଯାଇଥିଲେ । ତଥାପି ଜନ୍ ଗ୍ଲେନ୍ ଆମ ସମସ୍ତଙ୍କୁ ନେଇଯିବେ ବୋଲି ସାହସ ବାଂଧିଥିଲେ । ମାତ୍ର ଦାଦାଙ୍କର ବିଶ୍ୱାସ ହେଲା ନାହିଁ ଯେ ଇଗଲ୍ ଆଠ ଜଣଙ୍କୁ ନେଇ ପୃଥିବୀକୁ ଫେରିପାରିବ ବୋଲି । ସେଥିପାଇଁ ସେ ସ୍ୱଇଚ୍ଛାରେ ମଂଗଳ ଗ୍ରହରେ ରହିଗଲେ । ମାତ୍ର ଆମେ ମଂଗଳ ଗୁଡ଼ି ମହାଶୂନ୍ୟରେ ପ୍ରବେଶ କରିବା ପରେ ଏ କଥା ଜାଣିଲୁ । ଅନେକ ସମୟ ପରେ ଫେଡେରେଙ୍କୋ ପଚାରିଲେ—

—ଖାଦ୍ୟଦ୍ରବ୍ୟ, ପୋଷାକପତ୍ର ଆଦି ଯଥେଷ୍ଟ ଅଛି ତ ?

—ହଁ, ଅଛି । ମାତ୍ର ଶୀତକାଳ ମାଡ଼ି ଆସୁଛି । ଅତି ପ୍ରଚଣ୍ଡ, ଅକଳ୍ପନୀୟ ଶୀତ ସେଠାରେ । ସେଠାରେ ପୃଥିବୀର ମଣିଷ ବଂଚିବା ଅସମ୍ଭବ ।

—ତେବେ ? ଫେଡେରେଙ୍କୋ ଖୁବ୍ ଆତଙ୍କିତ ହୋଇ ପଚାରିଲେ ।

—ଆମ ଯାନରୁ ବ୍ୟାଟେରୀଗୁଡ଼ିକ ସରି ନ ଯିବା ପର୍ଯ୍ୟନ୍ତ ଦାଦା ଅନ୍ତତଃ ନିରାପଦରେ ରହି ପାରିବେ ସେଠି ।

ଅନ୍ୟମାନେ ସବୁ ଓହ୍ଲେଇ ଗଲେଣି । ପୋପ୍‌ଭିଚ୍ ଓ ସିତାଂଶୁଙ୍କୁ ସମସ୍ତେ ଘେରି ଯାଇଥାନ୍ତି । ରିନା ଯାନରୁ ସୁସ୍ନୋଭ୍ ଫୁଲଗଛ ଓ ଇରିନାଙ୍କୁ ଆଣିବାକୁ ଗଲା । ଆମେ ଯାଇ ଦାଦାଙ୍କ ଗବେଷଣାଗାରରେ ରୁଣ୍ଡ ହେଲୁ । ଦାଦାଙ୍କ ପ୍ରତିନିଧି ଭାବରେ ମୋ ଆଗରେ ସେ ବାକ୍ସ ଖୋଲାଗଲା । ଦୁଇଟି ସୁସ୍ନୋଭ୍ ଲତାରୁ ଗୋଟିଏ ମରି ଯାଇଥିଲା, ଅନ୍ୟଟି ବଂଚିଥିଲା । ମୁଁ ତାକୁ ରହସ୍ୟ-ପୁରୀର ବଗିଚାରେ ଖୁବ୍ ଭଲ ସ୍ଥାନ ଦେଖି ଲଗାଇ ଦେଲି । ମାତ୍ର ପୋପ୍‌ଭିଚ୍ ଆଉ ଜନ୍ ଗ୍ଲେନ୍ ପରୀକ୍ଷା କରି ଜାଣିଲେ ଯେ, ଇରିନାଙ୍କ ମଂଗଳରୁ ପୃଥିବୀକୁ ଆସିବା ପରେ ତାର ସବୁ ପ୍ରକୃତି ହରେଇ ବସିଛି । ସେଇଟା ଆଉ କିଛି କାମ ଦେବନି । ସୁସ୍ନୋଭ୍‌ର ଛଅ ଫୁଟ ଲମ୍ବ ଚେରକୁ ଗୁଡ଼ାଇ ଗୁଡ଼ାଇ ପୋତିଲି । ଆମେ ସବୁ ମହାକାଶଯାତ୍ରୀ ଦାଦାଙ୍କୁ ସ୍ମରଣ କରି ଟିକିଏ ଟିକିଏ ତା ମୂଳରେ ପାଣି ଦେଲୁ । ଆମ ମଂଗଳ ଅଭିଯାନର ଏକମାତ୍ର ପ୍ରମାଣ ସୁସ୍ନୋଭ୍ ।

ସେଦିନ ରାତିରେ ମତେ ଆଦୌ ନିଦ ହେଲାନି । ମୋ ଆଖି ଆଗରେ ଭାସିଗଲା ମଂଗଳର ଦୁରନ୍ତ ପ୍ରକୃତି······ଆଗରେ ଦାଦା ଦୌଡ଼ୁଛନ୍ତି, ପଛରେ କୁହୁଡ଼ି ମାଡ଼ି ଚାଲିଛି ତାଙ୍କୁ ଗ୍ରାସ କରିବାକୁ । ଦାଦା କୁହୁଡ଼ି ଟପି କେବେ ଆଗକୁ ଯାଇପାରି ନ ଥିବେ । ବୋଧହୁଏ

କେଉଁ ପଥର ଖୋଲରେ ପଶି ଆତ୍ମରକ୍ଷା କରିବାକୁ ଚେଷ୍ଟା କରି-ଥିବେ । କୁହୁଡ଼ି ଚାଲିଗଲା ପରେ ସେ ଯାନକୁ ଯାଇଥିବେ । ହେଷ୍ଟିକ୍‌ରେ ପହଂଚିଲାବେଳକୁ ରାତି ହୋଇଯାଇ ଥିବ । ଦାଦା ଶୀତରେ ଥରି ଥରି ହେଷ୍ଟିକ୍‌ରେ ପହଂଚିଥିବେ । ମୋର ହଠାତ୍ ମନେପଡ଼ିଗଲା ଯେ ହେଷ୍ଟିକ୍‌ରେ ରେଡିଓ-ଟେଲିଗ୍ରାଫ୍ ଅଛି । ଦାଦା ସେଇଟାକୁ ଯଦି ସଜାଡ଼ି ପାରିଥିବେ···ବିଛଣାରେ ଉଠି ବସି ପଡ଼ିଲି । ଆମ କେନ୍ଦ୍ରରେ ସେଇ ରେଡିଓ-ଟେଲିଗ୍ରାଫ୍‌ର ସଙ୍କେତ ଗ୍ରହଣ କରିବାକୁ ଗୋଟାଏ ଯନ୍ତ୍ର ଅଛି । ଆମେ ମଂଗଳ ଗ୍ରହରୁ ଛାଡ଼ିବାର ତିନି ଦିନରୁ ଅଧିକ ହେବ । ଯଦି ଦାଦା କିଛି ସଙ୍କେତ ଦିଅନ୍ତି··· । ହଠାତ୍ ଅଣନିଃଶ୍ୱାସୀ ହୋଇ ସେ ଯନ୍ତ୍ରଟା ପାଖକୁ ଦୌଡ଼ିଲି । ରାତି ସାଢ଼େ ଦୁଇ ସେତେବେଳକୁ ।

ସେଠି ପହଞ୍ଚି ଯନ୍ତ୍ରଟା ଖୋଲିଲି । ମାତ୍ର ମଝିରେ ମଝିରେ ଖାଲି ଖର୍ ଖର୍ ଶୁଭୁଥାଏ । କିଛି ସମୟ ପରେ ଚୌକିରେ ବସି ଦାଦାଙ୍କ ସଙ୍କେତକୁ ଅପେକ୍ଷା କରି ରହିଲି । ମୋର ଦୃଢ଼ ବିଶ୍ୱାସ ଥାଏ ଦାଦା ନିଶ୍ଚୟ ବଂଚିଛନ୍ତି, ଆଉ ସେ ରେଡିଓ-ଟେଲିଗ୍ରାଫ୍‌ଟାକୁ ସଜାଡ଼ି କିଛି ସଂକେତ ପଠାଇବେ ନିଶ୍ଚୟ । ଏତିକିବେଳେ ରିନା ପଶି ଆସି କହିଲା—

—ଆରେ ଶ୍ୟାମଳେନ୍ଦୁ, ତୁମେ ଏଠି କ'ଣ କରୁଛ ? ମୁଁ ତୁମକୁ ଚାରିଆଡ଼େ ଖୋଜି ବୁଲୁଛି·····

—ରିନା, ତୁମେ ଜାଣ ହେଷ୍ଟିକ୍‌ରେ ଗୋଟାଏ ରେଡିଓ-ଟେଲିଗ୍ରାଫ୍ ଯନ୍ତ୍ର ଅଛି । ଅବଶ୍ୟ ସେଇଟା ଅଚଳ ହୋଇପଡ଼ିଛି । ମାତ୍ର ଦାଦା ଯଦି ତାକୁ ମରାମତି କରି ପାରିଥିବେ, ତେବେ ଅନ୍ତତଃ କିଛି ସଙ୍କେତ ତାଙ୍କଠାରୁ ମିଳିବ । ରିନା କିଛି ନ କହି ପାଖରେ ପଡ଼ିଥିବା ଗୋଟିଏ ଚଉକିରେ ବସିଲା ।

କେତେ ସମୟ ଯାଏ ଆମେ ଡୁବିରହି ପଡ଼ିଲୁ । ହଠାତ୍ କାହାଁକ ନିଦ ଭାଙ୍ଗିଗଲା ସେ ଯନ୍ତ୍ରଟାରୁ ଟକ୍ ଟକ୍ ଶବ୍ଦ ପରିଷ୍କାର ଶୁଭୁଥାଏ । ଭଲ କରି କାନେଇଲି । ହଁ, ଠିକ୍ ଟେଲିଗ୍ରାଫ୍ ଶବ୍ଦ । ମାତ୍ର ଖୁବ୍ ଧୀରେ ଧୀରେ ଶୁଭୁଥାଏ । ଶିନାକୁ ଖୁବ୍ ଜୋର୍‌ରେ ଡାକ ପକେଇଲି । କାରଣ ମୁଁ ଟେଲିଗ୍ରାଫ୍ ଶବ୍ଦ ବୁଝି ପାରେନା । ଶିନା ହଠାତ୍ ଚମକି ପଡ଼ିଲା । ମାତ୍ର କିଛି ସମୟ ଶୁଣିଲା ପରେ ସେ ଆନନ୍ଦରେ ଚିତ୍କାର କଲା—

—ଶ୍ୟାମଳେନ୍ଦୁ, ଶ୍ୟାମଳେନ୍ଦୁ, କିଛି ବୁଝି ପାରୁଛ ? ଭେଷ୍ଟକରୁ ତୁମ ଦାଦା ଖବର ପଠାଉଛନ୍ତି—"ମୁଁ ବଂ-ଚି-ଛି··· ।"

ମୋ ମନ ଆନନ୍ଦରେ ଆଉ ମାନିଲା ନାହିଁ । ଆଉ କିଛି ଖବର ଛପି ରଖିବାକୁ ମୁଁ ଶିନାକୁ କହି ଦୌଡ଼ିଲି ଅନ୍ୟମାନଙ୍କୁ ଖବର ଦେବାକୁ । ସେତେବେଳକୁ ରାତି ପାହି ଆସୁଥାଏ । ସମସ୍ତେ ସେଠାରେ ପହଂଚିଲା ପରେ ଦାଦାଙ୍କ ସଂକେତ ବନ୍ଦ ହୋଇଗଲା । ଆମେ ବୁଝିପାରିଲୁ, ସେ ଘୋର କୁହୁଡ଼ି ଝପି ଭେଷ୍ଟକ୍‌ରେ ପହଂଚି ପାରିଛନ୍ତି, ଆଉ ରେଡିଓ-ଟେଲିଗ୍ରାଫ୍‌ଟା ସଜାଡ଼ି ପାରିଛନ୍ତି । ପ୍ରଫେସର୍ ଫୋପ୍‌ଭର୍ ମତେ ଆନନ୍ଦରେ କୁଣ୍ଢେଇ ପକେଇଲେ । ଆମେ ସମସ୍ତେ ବସି ବିଚାର କଲୁ, ଦାଦାଙ୍କୁ ମଂଗଳ ଗ୍ରହରୁ ଉଦ୍ଧାର କରିବାକୁ ପଡ଼ିବ । ସେଥିପାଇଁ ଜନ୍ ଗ୍ଲେନ୍ ଓ ସିତାଂଶୁ ଇଗଲ୍‌କୁ ନେଇ ଦୁଇ ଦିନ ପରେ ପୃଥିବୀ ଛାଡ଼ିବେ । ମୋର ଯିବାକୁ ଖୁବ୍ ଇଚ୍ଛା ଥିଲା । ମାତ୍ର ଇଗଲ୍ ଦୁଇ ଜଣଙ୍କ-ପାଇଁ ତିଆରି, ଫେରିଲା ବେଳକୁ ଅଧିକ ଆସିବେ । ଏଣୁ ଯେତେ ସମ୍ଭବ ସେତେ କମ୍ ଓଜନ ବହିବା ଦରକାର ସମ୍ପୂର୍ଣ୍ଣ ନିରାପତ୍ତା ପାଇଁ ।

ଇଗଲ୍ ଠିକ୍ ଏ ଖରାପ ହୋଇଯାଇଥିଲା । ଏଣୁ ତାକୁ ସଜାଡ଼ି-ବାକୁ ଦୁଇ ଦିନ ସମୟ ଲାଗିବ । ସିତାଂଶୁ ଇଗଲ୍‌ର ଯନ୍ତ୍ରପାତିକୁ

ଅତ୍ୟଧିକ ବରଫପାତରୁ ରକ୍ଷା କରିବାପାଇଁ ଏକ ନୂଆ ପଦ୍ଧତି ଆବିଷ୍କାର କଲେ ।

ଦୁଇ ଦିନ ପରେ ନିର୍ଦ୍ଧାରିତ ସମୟ । ସମସ୍ତଙ୍କଠାରୁ ବିଦାୟ ନେଇ ଜନ୍ ଗ୍ଲେନ୍ ଓ ସିତାଂଶୁ ଇଗଲ୍‌ରେ ଚଢ଼ିଲେ । ତଳେ ମୁଁ, ରିନା, ପୋଟ୍‌ଭିଚ୍, ନିନା ଆଉ ଅନ୍ୟମାନେ ଖୁବ୍ ଉତ୍କଣ୍ଠାରେ ଗୁହିଁ ରହିଥାଉ ।

ହଠାତ୍ ଜନ୍ ଗ୍ଲେନ୍‌ଙ୍କ ଶୂନ୍ୟଯାନ ଗର୍ଜି ଉଠିଲା । ଗୁଡ଼ାଏ ନିଆଁ ଓ ଧୂଆଁ ବାନ୍ତ କରି ଇଗଲ୍ ବିଦ୍ୟୁତ୍ ବେଗରେ ଉପରକୁ ଉଠିଲା । କେତୋଟି ସେକେଣ୍ଡ ଭିତରେ ଇଗଲ୍ ଆକାଶରେ ଅଦୃଶ୍ୟ ହୋଇଗଲା । ତଳକୁ ଧୂଆଁ ଧାର ଲମ୍ବି ଆସିଥାଏ । ମୁଁ ନିର୍ବାକ୍ ହୋଇ ଗୁହିଁ ରହିଥାଏ । ମୋଠାରୁ କିଛି ଦୂରରେ ସୁପ୍ନୋଭ୍ ମୁଣ୍ଡ ଟେକି ଠିଆହୋଇ ମୋତେ ଆଖିମିଟିକା ମାରୁଥାଏ । ଗତ ଦୁଇଟା ରାତି ଭିତରେ ସୁପ୍ନୋଭ୍ ବଂଚି ଉଠିଛି । ସେଥିରେ ଥିବା ଗୋଟିଏ କଢ଼ି ଅଧା ଫୁଟି ଗଲାଣି । ଗୋଧୂଳିର ଶାନ୍ତ ପବନରେ ତାର ଟିକେ ଟିକେ ଗନ୍ଧ ଭାସୁଥାଏ । ପ୍ରଫେସର୍ ପୋପ୍‌ଭିଚ୍ ସୁପ୍ନୋଭ୍‌କୁ ଆଦରରେ ପାପୁଲି ଉପରେ ଥୋଇ କହିଲେ, "ଶ୍ୟାମଳେନ୍ଦୁ, ତୁମ ଦାଦା ଫେରି ଆସିଲାବେଳକୁ ସୁପ୍ନୋଭ୍ ବଡ଼ ହୋଇ ଯାଇଥିବ, ଦୁଇ ତିନିଟା ଫୁଲ ବି ଫୁଟି ଯାଇଥିବ ।" ମଂଗଳପୃଷ୍ଠରେ ଥିବା ବେଳର କେତେ ମଧୁର, କେତେ ଭୟଂକର ସ୍ମୃତି ମୋ ମନରେ ତେଇଁ ଉଠିଲା । ଦାଦା ନିର୍ବିଘ୍ନରେ ଫେରି ଆସନ୍ତୁ ବୋଲି କାମନା କରି ତାଙ୍କର ମହାନୁଭବତା ପାଖରେ ମୁଁ ଓ ପୋପ୍‌ଭିଚ୍ ମୁଣ୍ଡ ନୁଆଁଇଲୁ ।

●